# ବାରବାଟୀ ଦୁର୍ଗ

( ଐତିହାସିକ )

---

ଲେଖକ :

୰ ପଣ୍ଡିତ କୃପାସିନ୍ଧୁ ମିଶ୍ର, ଏମ୍. ଏ.

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ -୨

# ବାରବାଟୀ ଦୁର୍ଗ

ଲେଖକ :

୰ ପଣ୍ଡିତ କୃପାସିନ୍ଧୁ ମିଶ୍ର, ଏମ୍. ଏ.

ପ୍ରକାଶକ :

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ-୨

ମୁଦ୍ରଣ :

**ନବବର୍ତ୍ତନ ପ୍ରିଣ୍ଟର୍ସ**

ଝାଞ୍ଜିରିମଙ୍ଗଳା, କଟକ-୯

ମୂଲ୍ୟ—ଟ ୯-୦୦

# ଉତ୍ସର୍ଗପତ୍ର

—୦ଃ୦—

ଯେଉଁ ମହାତ୍ମା ନିଜ ଶୋଣିତ ଦାନ କରି ଏହି ପ୍ରାଚୀନ ଓଡ଼ିଆ-
ଭାଷାର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛନ୍ତି ଏବଂ
ଯାହାଙ୍କର ପ୍ରାତଃସ୍ମରଣୀୟ ପୂର୍ବ ପୁରୁଷମାନେ
ଉତ୍କଳ ସ୍ୱାଧୀନତା-ଦେବୀଙ୍କ ଖଡ୍ଗ ଖରେ
ଆତ୍ମବଳିଦାନ ଓ ଶୋଣିତ-ତର୍ପଣ
କରୁଥିଲେ, ସେହି
ପୁଣ୍ୟାତ୍ମା
ବୃଦ୍ଧ

## ଫକୀରମୋହନ ସେନାପତିଙ୍କ

ଗୌରବମୟ
ନାମରେ ଲେଖକ ଓ
ପ୍ରକାଶକଙ୍କ ହୃଦୟର
କୃତଜ୍ଞତା ଓ ଭକ୍ତିର ନିଦର୍ଶନ ସ୍ୱରୂପ
ଏହି କ୍ଷୁଦ୍ର ପୁସ୍ତିକାଖଣ୍ଡି ଉତ୍ସୃଷ୍ଟ ହେଲା । ଇତି ।

## TRUE COPY

*Of my letter to*

BABU SARADA CHARAN MITRA, M.A. B,L.,

Late Justice of the Calcutta High Court.

*23/3 Mirjafar Lane*
*P.O. Harrison Road, Calcutta.*
*February 9-13.*

DEAR SIR,

It may surprise you to find the letter as it comes from a stranger. But a stranger though I am, I cannot but write it. I might have gone to you personally, but I am afraid whether you can make time to favour me with an interview.

A copy of your "Utkale Srikrisna Chaitanya" happened to come to my hands. Being an Oriya it naturally excited my curiosity to go through the book at any cost specially, when I found your venerable name associated with it. I need not tell you what a pleasure I derived from my reading, and how much wiser I became. The book is indeed a vast source of information about things of the Orissan antiquity. And I hope it will attract the special attention of those who care to have an idea of Orissa and her remains. I cannot but express here my desire that you will in near future kindly favour us with the publication of the second part of the book.

But I can not now lose the opportunity of pointing out to you a mistak—quite serious indeed specially when it is found in a book of yours—that has crept into your book. In the chapter devoted to the description of Cuttack of Barabati you have quoted at page 41 Ayeeni Akbari to show that within the fort there was a two storied building

("Dwitala ") built by Raja mukunda Deo. I may be pradoned to say that it is a serious mistek. You may kindly refer to the Ayeeni Akbari—either the translation of Gladwin or that of Blockman and Garrett—, you will find that it was not two-storied as you say, but a *nine. storied building* that Raja Mukunda Deo built. Abul Fazle gives in the Ayeeni Akbari a description of the contents of each of the nin stories. I need not here give the description, since you can find it better in the book itself. You may, if the Ayeeni Akbari be not available, refer to any of the following books for the description and correct account of the building.

Forgueson's "Indian and Eastern Architecture"

Sterling's "account of Orissa."

Hunter's "Statistical Account of Bengal"

Dr. Rajendra Lal Mitra's "Antiquities of Orissa"

Dharanikanta Lahiry Choudhury's recently published book in Bengalee called "Bharat Bhramana"

I hope you will kindly refer any of the above books and will be good enough to correct the mistake in the second edition.

Hoping to be execused for this instruction.

I beg to remain

Truely yours,
KRUPASINDHU MISRA.

## A REPLY

From

## The Late Justice, S.C. Mitra

*85 Grey Street, Calcutta,*
*10th February, 1913*

Dear Babu Kripasindhu,

I am very much obliged to you for your letter of the 9th. February. I do not pretend to be free from errors. "To err is human". I shall look to the authorities you have referred to and if necesscary, I shall change the word "dwitala" into "Saptatala" * in the next edition of my book which is already out of print. I am almost certain I committed a mistake, not having consulted the authorities referred to.

As for the second part of my book, I do not know when I may issue it, though the manuscript is almost ready. I have so little time for literary work that I must retire from the noisy world before I can devote myself again to literature, which I liked so much and which I still like. I am not made for politics nor for Swadeshi Literature ought to be my pride, but unfortunately the whirlwind of circumstances is dragging me out of the path, which I in my younger days, chalked for myself.

I am glad that you have written to me. What is there for me to excuse you? I am not so thinskinned as to look askance at a gentleman who honestly points out a mistake. I request may readers to point out therein my blunders, so that I may correct myself.

Thanking you again,

Yours sincerely,

SARADA CHARAN MITRA.

Babu Krupasindhu Misra
23/2 Mirjafar Lane,
P. O.—Harrison Road,
Calcutta.

---

* ନବତଳର ସମରେ ସପ୍ତତଳ ଲେଖିଛନ୍ତି ପରେ ସଂଶୋଧନ କରିଦେବେ ।

ଶ୍ରୀଯୁକ୍ତ ଫକୀରମୋହନ ସେନାପତିଙ୍କର

# ମନ୍ତବ୍ୟ

"ପ୍ରକୃତ ମୁଁ ସତ୍ୟକଥା ଲେଖୁଛୁ—ବାରବାଟୀ ପ୍ରବନ୍ଧଟି ଆପାତତଃ ଉତ୍କଳଭାଷା ଭଣ୍ଡାରରେ ଗୋଟିଏ ମାଣିକ୍ୟ" । "ମୋତେ ବିଶ୍ୱାସ କରନ୍ତୁ—ଭାଷାର ବନ୍ଧନ ତଥା ଚିନ୍ତାଶୀଳତା ଏବଂ ପ୍ରୟୋଜନୀୟତା ସମସ୍ତ ବିଷୟ ସମବେତରେ ଆଜି ପର୍ଯ୍ୟନ୍ତ ସାହିତ୍ୟରେ ଯେତେ ପ୍ରବନ୍ଧ ପ୍ରକାଶିତ ହୋଇଅଛି ସମସ୍ତଙ୍କଠାରୁ ବାରବାଟୀ ପ୍ରବନ୍ଧ ଶ୍ରେଷ୍ଠତମ ବୋଲି ଜ୍ଞାନ କରେ । ପୁସ୍ତକାକାରରେ ପ୍ରତ୍ୟେକ ଶିକ୍ଷିତ ଏବଂ ପାଠାର୍ଥୀ ନବ ଯୁବକ ହାତରେ ରହିବାର ଉଚିତ—ସେଥି ସକାଶେ ବ୍ୟସ୍ତ ଥିଲି" । "ମୋହର ଧ୍ରୁବ ବିଶ୍ୱାସ ନିଶ୍ଚୟ ଦରିଦ୍ର ଉତ୍କଳଭାଷା ଆପଣଙ୍କ ଯୋଗେ ସମୟରେ ଅଳଙ୍କୃତା ହେବ । 'ତୁଳସୀ ଦୁଇପତ୍ରରୁ ବାସେ' । ଇତ୍ୟାଦି ଇତ୍ୟାଦି ।

# ସୂଚୀପତ୍ର



---

# ବାରବାଟୀ ଦୁର୍ଗ

## ପ୍ରଥମ ଅଧ୍ୟାୟ
( ଉପକ୍ରମଣିକା )

"ଐତିହାସିକ ଏ ଦୁର୍ଗ ବାରବାଟୀ
ବୀର ରକ୍ତ ପିଣ୍ଡେ ଗଢ଼ା ଯାର ମାଟି"—ରାଧାନାଥ ।

ଭାରତବାସୀ ଇତିହାସ ରଚନାରେ ପରାଙ୍ମୁଖ ଥିଲେ, ଏହି ଅପବାଦ ପ୍ରତ୍ୟେକ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମୁଖରୁ ଅଳ୍ପାଧିକ ପରିମାଣରେ ଶୁଣାଯାଏ । କେବଳ ପାରତ୍ରିକତାରେ ତନ୍ମୟ ହୋଇ ହିନ୍ଦୁସ୍ଥାନୀୟ ଆର୍ଯ୍ୟମାନେ ଐତିହ୍ୟତାକୁ ଏକାବେଳକେ ହେୟଜ୍ଞାନ କରୁଥିଲେ । ସମସ୍ତ ଜଗତ୍ ଦୁଃଖମୟ, ମାୟାଜାଲ ବିଜଡ଼ିତ ଓ ଅସତ୍ ଏବଂ କେବଳ ବ୍ରହ୍ମହିଁ ସତ୍, ଚିଦାନନ୍ଦମୟ—ଏହି ବିଶ୍ୱାସ ଦାର୍ଶନିକ ଯୁକ୍ତିରେ ଅସିଦ୍ଧ ହେଉ ପଛକେ, ଭାରତୀୟ ପ୍ରାଣରେ ଏହାର ପ୍ରଭାବ ଅତ୍ୟଧିକ । ସର୍ବଦା ପରିବର୍ତ୍ତନଶୀଳ, ଶାନ୍ତ, ଉପାଧିବିଶିଷ୍ଟ (Conditioned) ଜଗତ୍‌କୁ "ଚିର ହାହାମୟ" ଉପଲବ୍ଧି କରି, ସନାତନ ଅନନ୍ତ ନିର୍ଗୁଣ ବ୍ରହ୍ମଙ୍କଠାରେ ଆତ୍ମସମର୍ପଣ କରିବା ଭାରତବାସୀଙ୍କ ଜୀବନର କାର୍ଯ୍ୟ । ସଂସାର ମାୟାମୟ, ସଂସାରୀର ପ୍ରାଣ ମାୟାଜାଲବିଜଡ଼ିତ, ଅତଏବ ମୁଁ ସଂସାରରେ ଥାଇ ସୁଦ୍ଧା କିପରି ଏହି ସର୍ବବ୍ୟାପୀ ମାୟାଜାଲରୁ ବିମୁକ୍ତ ହୋଇ ନିର୍ମାୟା ପୁରୁଷଙ୍କୁ ସ୍ୱଚକ୍ଷୁରେ ଦେଖି ପାରିବି, କିପରି ତାହାଙ୍କ ବିଭୂତି ତେଜ ଅନୁଭବ କରି ତତ୍‌ପ୍ରଦର୍ଶିତ ପଥରେ ଅଗ୍ରସର ହୋଇ ଆତ୍ମାର ସଦ୍‌ଗତି ବିଧାନ କରି ପାରିବି—ଏହି ପିପାସା ଯାହାର ପ୍ରାଣ ବ୍ୟାକୁଳ କରୁଅଛି, ତା'ର ଅସାର ସାଂସାରିକ ବିଷୟରେ ବିତୃଷ୍ଣା ହେବା ସ୍ୱାଭାବିକ । ସଂସାରର ଅଳୀକତା ବିଷୟକ ଏହି ଚିନ୍ତା ଭାରତ ପ୍ରାଣ ଏତେ ପ୍ରବଳ ଭାବରେ ଅଧିକାର କରିଥିଲା ଯେ, ଊନବିଂଶ ଶତାବ୍ଦୀର ପ୍ରାନ୍ତଭାଗରେ ପାଶ୍ଚାତ୍ୟ ଶିକ୍ଷାରେ ଅନୁପ୍ରାଣିତ ହୋଇ ସୁଦ୍ଧା ଉତ୍କଳର କବିବର କହିଅଛନ୍ତି:—

"ସଂସାରେ ଥାଇ ମୁଁ ସଦା ଉଦାସୀନ,
ଉଦାସୀନ ପ୍ରାୟେ, କଟାଇଲି ଦିନ ।

× × ×

ଚିର ହାହାମୟ ଏଥିର ଜୀବନ,
ଜୀବନ ନୁହଇ ଜୀବନ୍ତ ମରଣ ।”

ଇତିହାସ ସାଂସାରିକ ବିଷୟର ଦପାନ ରଖେ । ଏହାଦ୍ୱାରା ଜାତୀୟ, ସାମାଜିକ, ରାଜନୈତିକ ବା ବ୍ୟକ୍ତିଗତ ଯେ କୌଣସି ଉପକାର ହେଉ ପଛକେ, ତାହା କେବଳ ଅସାର ସଂସାର ସମ୍ବନ୍ଧୀୟ । ଭାରତର ଇତିହାସ ଯେ ଏକାବେଳକେ ନାହିଁ, ଏମନ୍ତ ନୁହେଁ । ଭାରତର ଏମନ୍ତ କି ଗିରି, ବନ, ନଦ, ନଦୀ, ପ୍ରାନ୍ତର ପର୍ଯ୍ୟନ୍ତ ସମସ୍ତ ଭାରତୀୟ ଇତିହାସର ମୂକ ସାକ୍ଷୀରୂପେ ବିରାଜମାନ । ଏତିକିମାତ୍ର କୁହାଯାଇ ପାରେ, ଭାରତର ଧାରାବାହିକ ଇତିହାସ ନାହିଁ । ଇତିହାସ ସ୍ୱତନ୍ତ୍ର ଭାବରେ ଇତିହାସ ଆକାରରେ ନାହିଁ । ଯାହା କିଛି ଅଛି, ତାହା ବିଭିନ୍ନ ଆକାରରେ ଅଛି । ଇତିହାସକୁ ଇତିହାସ ଆକାରରେ ପ୍ରଣୟନ କରିବା ସାଂସାରିକ ବୁଦ୍ଧି ପ୍ରଣୋଦିତ ହୋଇପାରେ; କିନ୍ତୁ ଯେଉଁସବୁ ଲେଖାବଳୀରୁ ଇତିହାସର ଉପାଦାନ ମିଳିଥାଏ, ତାହା କେବଳ ସଂସାର ସମ୍ବନ୍ଧୀୟ ନୁହେଁ । ସେମାନଙ୍କ ମଧ୍ୟରୁ ପ୍ରାୟ ପ୍ରତ୍ୟେକର ଗୂଢ଼ ଉଦ୍ଦେଶ୍ୟ କେବଳ ଏହି ଅସାର ସଂସାରର ମାୟାଜାଲରୁ ମୁକ୍ତି ଲଭିବାର ଉପାୟ ନିର୍ଣ୍ଣୟ କରିବା । ଏଭଳିକି ଭାରତୀୟ କବିମାନଙ୍କର କାବ୍ୟ-ନାଟକାଦି ସମାଜାଦିର ବର୍ଣ୍ଣନ ଦ୍ୱାରା ଐତିହାସିକ ଉପକରଣ ଦାନ କରୁ କରୁ ପାଠକକୁ ଏହି ସଂସାରର ନଶ୍ୱରତା ଏବଂ ଶାଶ୍ୱତ ବ୍ରହ୍ମ ପ୍ରାପ୍ତିର ବିଶଦ ଫଳ ଶିକ୍ଷା ଦେଇଅଛନ୍ତି । ଦାର୍ଶନିକ ଭାବରେ ଏହି ଚିନ୍ତାର ମଙ୍ଗଳାମଙ୍ଗଳ ବିଚାର କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ, ତେବେ ଏଠାରେ ଏତିକି ମାତ୍ର କୁହାଯାଇ ପାରେ ଯେ, ଏହି ସାଂସାରିକ ବୁଦ୍ଧି ପୂର୍ବପୁରୁଷମାନଙ୍କର ନ ଥିବାରୁ ଆମ୍ଭମାନଙ୍କର ଯେ ଅଭୂତ କ୍ଷତି ହୋଇଅଛି, ତାହା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ବୁଝିପାରୁଥିବେ । ଆଜି ଆମ୍ଭ ପୂର୍ବପୁରୁଷମାନଙ୍କର କୀର୍ତ୍ତିକଳାପ ବୁଝିବା ଆମ୍ଭର କ୍ଷମତାର ଅତୀତ । ଯଦି ନିତାନ୍ତ ବୁଝିବୁ, ତାହା ଇଉରୋପୀୟ ପ୍ରତ୍ନତତ୍ତ୍ୱବିଦ୍‌ଗଣ ଆମ୍ଭମାନଙ୍କୁ ବୁଝାଇ-ଦେବେ । କଳା କହିଲୁ ବା ଧଳା କହିଲୁ ମୋକ୍ଷମୂଲର, ବୁଲର, ହ୍ୱିଲର, ଫର୍ଗୁସନ, ହଣ୍ଟର, ଷ୍ଟର୍ଲିଙ୍ଗ, ଟଏନବୀ ପ୍ରଭୃତି ଆମ୍ଭମାନଙ୍କର ଗୁରୁ ବୋଲିବାକୁ ହେବ । ଦୁଃଖର କଥା ଏମାନେ ଏଭଳି ଗୁରୁତର ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ହସ୍ତରେ ନେଇ ଅନେକ ସମୟରେ ଅକୃତକାର୍ଯ୍ୟ ହୋଇ ଅଛନ୍ତି । ତାହା ହେବାର କଥା; କାରଣ ଶାନ୍ତ ମାନବର ହୃଦୟ ନିଜ ନିଜ ଭାବ ଓ କାର୍ଯ୍ୟରେ ଏତେ ପ୍ରଣୋଦିତ ହୋଇଥାଏ ଯେ, ଅନ୍ୟ ଜାତୀୟ ବିଷୟକୁ ନିରପେକ୍ଷ ଭାବରେ ଆଲୋଚନା କରିବା ତାହା ପକ୍ଷରେ ଅସମ୍ଭବ ହୋଇ ପଡ଼େ । ସାଧାରଣତଃ ମାନବ ବିଚାର କରିବାକୁ ଗଲାବେଳେ ପର ସହିତ ନିଜକୁ ତୁଳନା ନ କରି ନିଜ ସହିତ ପରକୁ ତୁଳନା କରି ବିଚାର କରେ । ଅର୍ଥାତ୍ ପରର କୌଣସି ବିଷୟ ବିଚାର

କଲେ, ସେ ପ୍ରଥମରେ ଦେଖେ ପରର ଉକ୍ତ ବିଷୟଟି ନିଜ ସହିତ ମେଳ ଖାଉଛି କି ନାହିଁ । ଯଦି ତାହା ମେଳଖାଏ, ତାହାହେଲେ ସେହିଟି ଉତ୍ତମ; ଯଦି ମେଳ ନ ଖାଏ, ଯଦି ହିନ୍ଦୁର କୌଣସି ବିଷୟ ଖ୍ରୀଷ୍ଟୀୟାନର ବିରୋଧୀ, ତାହାହେଲେ ଖ୍ରୀଷ୍ଟୀୟାନ ମତରେ ହିନ୍ଦୁର ସେହିଟି ନିନ୍ଦନୀୟ । ଏହାହିଁ ଆମ୍ଭେମାନେ ନିଜ ନିଜ ବ୍ୟକ୍ତିଗତ ଜୀବନରେ ପ୍ରତ୍ୟହ ଅନୁଭବ କରୁ । ମୁଁ ଅମୁକକୁ ଘୃଣା କରେଁ, ତାହାର ଅର୍ଥ ତାହାର ସ୍ୱଭାବଟି ଯେତେ, ଭଲ ହେଉ ପଛକେ, ତାହା ମୋ ସହିତ ମେଳ ଖାଏ ନାହିଁ । ମୁଁ ସମସ୍ତଙ୍କୁ ମୋର ମାନଦଣ୍ଡରେ ମାପିଥାଏଁ, ଯେ ମୋ ସଙ୍ଗେ ସମାନ ସେ ମୋର ବନ୍ଧୁ ଏବଂ ଯେ ମୋଠାରୁ ବିଭିନ୍ନ ସେ ମୋର ଶତ୍ରୁ ଓ ଘୃଣାର ପାତ୍ର । ଅତଏବ ଯଦିଚ ବିଦେଶୀୟମାନେ ଆମ୍ଭମାନଙ୍କର ଉତ୍କୋଳୁଳିନରେ କିଛି ଅକୃତକାର୍ଯ୍ୟ ହୋଇଥାନ୍ତି, ତଥାପି ସେମାନେ ଆମ୍ଭମାନଙ୍କର ପୂଜ୍ୟ । ସେମାନେ ଅମ୍ଭମାନଙ୍କୁ ଚକ୍ଷୁ ଦେଉଅଛନ୍ତି, ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର କୀର୍ତ୍ତିକଳାପ ଅମ୍ଭମାନଙ୍କ ସମ୍ମୁଖରେ ଇତିହାସ ଦର୍ପଣରେ ପ୍ରତିବିମ୍ବିତ କରାଇ ଦେଖାଇ ଦେଉ ଅଛନ୍ତି । ତେବେ ସେମାନଙ୍କୁ ଅଧ୍ୟୟନ କରିବା ପୂର୍ବରୁ ଏତିକି ମାତ୍ର ସାବଧାନ ହେବା ଉଚିତ ଯେ ସେମାନଙ୍କର ପ୍ରତ୍ୟେକ ସିଦ୍ଧାନ୍ତ ଓ ବର୍ଣ୍ଣନା ଆମ୍ଭେମାନେ ବିଶେଷ ସତର୍କତା ସହିତ ଗ୍ରହଣ କରିବା । ଓଡ଼ିଶା ସମ୍ବନ୍ଧରେ ଇଉରୋପୀୟ ଓ ବଙ୍ଗଦେଶୀୟ କେତେ ଲେଖକ ପୁସ୍ତକ ପ୍ରଣୟନ କରି ଅଛନ୍ତି । ଅତଏବ ସେହି ସତର୍କତା ସହିତ ଆଜି ଆମ୍ଭେମାନେ 'ଉତ୍କଳର ପୂର୍ବ-କୀର୍ତ୍ତି-ସ୍ମୃତି-ପୂତ ବାରବାଟୀ'' ଦୁର୍ଗ ସମ୍ବନ୍ଧରେ କିଞ୍ଚିତ ଆଲୋଚନା କରିବୁଁ ।

---

## ଦ୍ୱିତୀୟ ଅଧ୍ୟାୟ

### ( ଦୁର୍ଗ ନିର୍ମାଣ ସମୟ)

ବାରବାଟୀ କେବେ ନିର୍ମିତ ହୋଇଥିଲା । ଏହି ପ୍ରଶ୍ନର ସମାଧାନ ପୂର୍ବରୁ ମନେ ରଖିବା ଆବଶ୍ୟକ ଯେ, ଓଡ଼ିଶାର ନଗରମାନଙ୍କ ମଧ୍ୟରେ କଟକ ଅପେକ୍ଷାକୃତ ନୂତନ । ଯାଜପୁର, ପୁରୀ ଓ ଭୁବନେଶ୍ୱର କ୍ରମାନ୍ୱୟରେ କେଶରୀ ବଂଶର ପ୍ରଥମ ନୃପତିମାନଙ୍କର ରାଜଧାନୀ ଥିଲା । ଏହି ବଂଶୀୟ ଅଧମ ନରପତିମାନଙ୍କ ସମୟରେ

ଦେଶ ଭିତରେ ବା ବାହାରେ ଯୁଦ୍ଧ ବିଗ୍ରହାଦିର ବିଶେଷ ଆଶଙ୍କା ନଥିଲା । ସେମାନେ ପରମ ଶାନ୍ତିରେ ରାଜପଟ୍ଟ କରୁଥିଲେ । ଇତିହାସମାନଙ୍କରୁ ଜଣାଯାଏ ଯେ, ସେମାନେ ଯାଗଯଜ୍ଞାଦି କାର୍ଯ୍ୟ, ମନ୍ଦିର ନିର୍ମାଣ ପ୍ରଭୃତି ଧର୍ମକାର୍ଯ୍ୟରେ ଆପଣାକୁ ନିୟୋଜିତ କରୁଥିଲେ । ଯାଜପୁରର ଯଜ୍ଞ ଓ ପୁରୀର ପୂର୍ବ ମନ୍ଦିର ଯଯାତିକେଶରୀଙ୍କର କାର୍ଯ୍ୟ । ଭୁବନେଶ୍ୱରର ପ୍ରସିଦ୍ଧ ମନ୍ଦିର ଯଯାତିଙ୍କ ଦ୍ୱାରା ଆରବ୍ଧ ହୋଇ, ସେହି ବଂଶୀୟ ଚତୁର୍ଥ ନରପତି ଲଲାଟେନ୍ଦୁ ବା ଅଳାବୁକେଶରୀଙ୍କ ଦ୍ୱାରା ୬୬୬ ଖ୍ରୀଷ୍ଟାବ୍ଦରେ ସମାପିତ ହୋଇଥିଲା । ଏଥିରୁ ଜଣାଯାଏ ସେତେବେଳେ ଦେଶ ତଥା ରାଜାମାନେ ପରମ ଶାନ୍ତି ଉପଭୋଗ କରୁଥିଲେ । କାରଣ ପୃଥିବୀର ପ୍ରତ୍ୟେକ ଦେଶର ଇତିହାସରୁ ଜଣାଯାଏ ଯେ, ଶିଳ୍ପାଦି କଳା ବିଦ୍ୟା ଶାନ୍ତିମୟ କାଳରେ ଆବିର୍ଭୂତ ହୋଇଥାଏ । ଅତଏବ ବହିଃଶତ୍ରୁର ଆକ୍ରମଣ ଭୟ ନ ଥିବାରୁ ରାଜାମାନେ ଧର୍ମାଚରଣାଦିଦ୍ୱାରା ଅନ୍ତଃଶତ୍ରୁର ଉତ୍ପାଟନ ନିମନ୍ତେ ଚେଷ୍ଟା କରୁଥିଲେ । ତେଣୁ ଚିରବସନ୍ତଲୀଳାସ୍ଥିତ, ଅନନ୍ତସାଗର ବିଧୌତ ପବିତ୍ର ନୀଳାଚଳଧାମ ଏବଂ ପୁରାଣପ୍ରସିଦ୍ଧ ଏକାମ୍ରକାନନ କେଶରୀବଂଶୀୟ ଆଦିମ ନରପତିମାନଙ୍କର ରାଜଧାନୀ ହେବା ସ୍ୱାଭାବିକ; ସେମାନଙ୍କ ସମୟରେ ସୁରକ୍ଷିତ ସ୍ଥାନରେ ସୁଦୃଢ଼ ଦୁର୍ଗାଦି ନିର୍ମାଣର ତେତେ ପ୍ରୟୋଜନ ନଥିଲା । କିନ୍ତୁ ଉକ୍ତ ବଂଶର ପଶ୍ଚିମ କାଳକୁ କ୍ରମେ ବହିଃଶତ୍ରୁ ଆକ୍ରମଣର ଆଶଙ୍କା ହେବାକୁ ଲାଗିଲା; ଏବଂ ଗଙ୍ଗବଂଶୀୟ ନରପତିମାନେ ଦାକ୍ଷିଣାତ୍ୟରୁ ଓଡ଼ିଶା ଆକ୍ରମଣ କରିବାର ଉଦ୍ୟମ କଲେ । ଏହି ସମୟରେ କୌଣସି ସୁରକ୍ଷିତ ସ୍ଥାନରେ ସୁଦୃଢ଼ ଦୁର୍ଗ ନିର୍ମାଣ କରି ରାଜଧାନୀ ସ୍ଥାପନ କରିବାର ପ୍ରୟୋଜନ ହେଲା । ସୁତରାଂ ଉକ୍ତ ବଂଶୀୟ ନୃପକେଶରୀ ସ୍ୱୀୟ ରାଜତ୍ୱକାଳରେ (୯୪୦ରୁ ୯୫୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) କଟକ ନଗର ସ୍ଥାପନ କଲେ (୧) ଏବଂ ବିଡ଼ାନାସୀଠାରେ ଗୋଟିଏ ସୁଦୃଢ଼ ଦୁର୍ଗ ନିର୍ମାଣ କଲେ । ବର୍ତ୍ତମାନ ବିଡ଼ାନାସୀ ପୂର୍ବେ ବାରଣସୀ ନାମରେ ଅଭିହିତ ଥିଲା । ସେତେବେଳେ ଉତ୍କଳ ନରପତିମାନେ ଭାରତର ସବୁ ତୀର୍ଥସ୍ଥାନମାନ ଉତ୍କଳରେ ସ୍ଥାପନ କରିବାର ଚେଷ୍ଟା କରିଥିଲେ । ଭୁବନେଶ୍ୱରର ବିନ୍ଦୁସାଗରରେ ଗଙ୍ଗା, ଯମୁନା, ସରସ୍ୱତୀ, ନର୍ମ୍ମଦା, କାବେରୀ, ଗୟା ପ୍ରଭୃତି ସମୁଦାୟ ତୀର୍ଥମାନଙ୍କର ସମନ୍ୱୟ ହୋଇଅଛି । ବୈତରଣୀ ନଦୀ ମଧ୍ୟ ଗୋଟିଏ ତୀର୍ଥ । "କଳୌ ଚିତ୍ରୋତ୍ପଳା ଗଙ୍ଗା", ମହାନଦୀ ଉତ୍କଳର ଗଙ୍ଗା । ଏହିପରି ଭାରତର ତୀର୍ଥମାନ ଉତ୍କଳରେ ପ୍ରତିଷ୍ଠିତ ହୋଇଥିଲା । ସେହି ହେତୁରୁ ଉତ୍କଳ ନରପତି ନୂତନ ପ୍ରତିଷ୍ଠିତ ରାଜଧାନୀକୁ ବାରଣସୀ ଆଖ୍ୟା ଦେଇଥିଲେ । ବର୍ତ୍ତମାନ କଟକନଗରଠାରୁ ବିଡ଼ାନାସୀ

(୧) ଷ୍ଟର୍ଲିଙ୍ଗ କହନ୍ତି, ନୃପକେଶରୀ ୯୮୯ ଖ୍ରୀଷ୍ଟାବ୍ଦରେ କଟକନଗର ସ୍ଥାପନ କରିଥିଲେ ।

ପୃଥକ୍ ହୋଇଥିଲେହେଁ, ପୂର୍ବେ କଟକ ସ୍ୱତନ୍ତ୍ର ନଗର ନଥିଲା । କଟକ ଓ ବିଡ଼ାନାସୀ ଉଭୟ ପୂର୍ବେ "କଟକ ବାରାଣସୀ" ନାମରେ ଅଭିହିତ ଥିଲା । ଏତଦ୍-ପରେ ଆମ୍ଭେମାନେ ଦେଖାଇବୁଁ ଯେ, ଚୌଦ୍ୱାର ମଧ୍ୟ କଟକ ଚୌଦ୍ୱାର, ବା କଟକ ନାମରେ ଅଭିହିତ ଥିଲା । କଟକ ରାଜଧାନୀ ହେଲା ସତ୍ୟ; କିନ୍ତୁ ନଦୀ-ସ୍ରୋତରେ ନଗର ଧୌତ ହୋଇ ଯିବାର ଆଶଙ୍କା ଦେଖି, ତାହାଙ୍କର ପରବର୍ତ୍ତୀ ନରପତି ମକର ବା ମର୍କଟକେଶରୀ (୯୫୩ରୁ ୯୭୦ ଖ୍ରୀଷ୍ଟାବ୍ଦ) କଟକ ସୁରକ୍ଷଣ ନିମନ୍ତେ କାଠଯୋଡ଼ି ଓ ମହାନଦୀରେ ଯେଉଁ ପଥର ବନ୍ଧ ନିର୍ମାଣ କରାଇଥିଲେ, ତାହା ଅଦ୍ୟାବଧି ବର୍ତ୍ତମାନ ଥାଇ ଓଡ଼ିଆଙ୍କ ଇଂଜିନିୟରିଙ୍ଗ କୌଶଳର ପରାକାଷ୍ଠା ଦେଖାଉଅଛି । ତାହାଙ୍କ ପରବର୍ତ୍ତୀ ରାଜା ମାଧବକେଶରୀ ନଦୀବନ୍ୟାରୁ ଅଧିକ ନିରାପଦରେ ବାସ କରିବା ଉଦ୍ଦେଶ୍ୟରେ କାଠଯୋଡ଼ୀର ଦକ୍ଷିଣପାର୍ଶ୍ୱରେ ସାରଙ୍ଗଗଡ଼ ନାମକ ଗୋଟିଏ ଦୁର୍ଗ ନିର୍ମାଣ କରିଥିଲେ ସତ୍ୟ; କିନ୍ତୁ କଟକ ଉକ୍ତ ଦିବସରୁ ଓଡ଼ିଶାର ରାଜଧାନୀ ରୂପେ ଅଦ୍ୟାପି ବିଦ୍ୟମାନ ରହିଅଛି ।

କେହି ଅବଶ୍ୟ ମନେ କରିବେ ନାହିଁ ଯେ, ତତ୍ପୂର୍ବରୁ କଟକର ନାମ ସୁଦ୍ଧା ନଥିଲା । ଗୁପ୍ତବଂଶୀୟ ରାଜା ଭବଗୁପ୍ତଙ୍କ ଅନୁଶାସନ ପତ୍ରରେ କଟକର ଉଲ୍ଲେଖ ଥିବାର ବିଶ୍ୱକୋଷ କହନ୍ତି । ଭବଗୁପ୍ତ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରେ ରାଜତ୍ୱ କରିଥିଲେ ! ତେବେ ଭବଗୁପ୍ତଙ୍କ ନିର୍ଦ୍ଦିଷ୍ଟ କଟକ ବର୍ତ୍ତମାନ କଟକ କି ନୁହେଁ ଏ ବିଷୟରେ ଘୋର ସନ୍ଦେହ । କାରଣ, ଚୌଦ୍ୱାରକୁ ଲୋକେ ସେତେବେଳେ କଟକ ବୋଲି କହୁଥିଲେ । ଚୌଦ୍ୱାର ଅବଶ୍ୟ କଟକଠାରୁ ପୁରାତନ । ବିଶ୍ୱକୋଷ କହନ୍ତି ଯେ, ମାଦଳପାଞ୍ଜି ମତରେ ସର୍ପଯଜ୍ଞକାଳରେ ରାଜା ଜନମେଜୟ କର୍ତ୍ତୃକ ଚୌଦ୍ୱାର ସ୍ଥାପିତ ହୋଇଥିଲା । ଏହା ଯଦି ସତ୍ୟ ହୁଏ, ତାହାହେଲେ କଟକଠାରୁ ଚୌଦ୍ୱାର ନିଶ୍ଚୟ ବହୁ ପୁରାତନ । ଦ୍ୱିତୀୟତଃ, କଟକନଗର ସ୍ଥାପିତ ହେବାର ଠିକ୍ ପରେ କଟକରେ ଦୁର୍ଗ ନିର୍ମିତ ହୋଇ ନଥିଲା । ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ, ନୃପକେଶରୀ ବିଡ଼ାନାସୀ (ବାରାଣସୀ) ସ୍ଥାପନ କରି ସେଠାରେ ଗୋଟିଏ ସୁଦୃଢ଼ ଦୁର୍ଗ ନିର୍ମାଣ କରାଇ ଥିଲେ ଏବଂ ମାଧବକେଶରୀ କାଠଯୋଡ଼ୀର ଦକ୍ଷିଣ (ବର୍ତ୍ତମାନ ପଟିଆ ଜଙ୍ଗଲ)ରେ ସାରଙ୍ଗଗଡ଼ ନାମକ ଦୁର୍ଗ ନିର୍ମାଣ କରାଇ ଥିଲେ । ଅତଏବ ବିଡ଼ାନାସୀ ଦୁର୍ଗ ଶତ୍ରୁ ଭୟରୁ ପୂର୍ବ ଅପେକ୍ଷା ଅଧିକ ନିରାପଦରେ ରହିଥିଲା । କାରଣ ଏହାର ଦକ୍ଷିଣରେ ନଦୀ ଓ ସାରଙ୍ଗଗଡ଼ ଏବଂ ଉତ୍ତରପାର୍ଶ୍ୱରେ ନଦୀ ଓ ଚୌଦ୍ୱାର ଦୁର୍ଗ ଥିଲା । ତେଣୁ, ରାଧାନାଥଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, କେଶରୀବଂଶୀୟ ଶେଷ ନରପତି ସୁବର୍ଣ୍ଣକେଶରୀ ବିଡ଼ାନାସୀ ଦୁର୍ଗରେ ବାସ କରୁଥିଲେ । ମହାନଦୀର ଉତ୍ତରାଞ୍ଚଳ ପ୍ରାଚୀନ କାଳରେ ଉତ୍ତର କୋଶଳ ନାମରେ ବିଦିତ ଥିଲା । ଚୌଦ୍ୱାର ଉକ୍ତ ରାଜ୍ୟର ନରପତି ମାନଙ୍କର ରାଜଧାନୀ ଥିଲା । ରାଧାନାଥ ମଧ୍ୟ କହନ୍ତି—

"ବନ୍ଧୁଦ୍ୱାରଶୋଭ ପୁର ଚଉଦ୍ୱାର
ଉତ୍ତର କୌଶଲ। ମୌଳି ଅଳଙ୍କାର ।"

ବଡ଼ାନାସୀ ଦୁର୍ଗ ନିର୍ମାଣ ପରରୁ ନୃପକେଶରୀ ନିଶ୍ଚୟ ଏ ସୁବିଧାଟି ଦେଖି ସେଠାରେ ଦୁର୍ଗ ନିର୍ମାଣ କରାଇଥିବେ । ଅତଏବ ଏହା ସ୍ପଷ୍ଟ ଯେ, ଚୌଦ୍ୱାର କଟକଠାରୁ ଦୂରବର୍ତ୍ତୀ ଏବଂ ସେତେବେଳେ ଅବଶ୍ୟ କଟକ ଚୌଦ୍ୱାରଠାରୁ ଅଧିକ ଖ୍ୟାତ ନ ଥିଲା । ତେଣୁ ଆମ୍ଭମାନଙ୍କର ବିଶ୍ୱାସ ଯେ, ଭବଗୁପ୍ତଙ୍କ ଅନୁଶାସନ ପତ୍ରରେ ନିର୍ଦ୍ଦିଷ୍ଟ କଟକ ବର୍ତ୍ତମାନର କଟକ ନୁହେଁ, ଚୌଦ୍ୱାର କଟକ ନାମରେ ଲିଖିତ ଥାଇ ପାରେ ।

ଉପରୋକ୍ତ ପ୍ରମାଣରୁ ଏହା ସ୍ପଷ୍ଟ ଯେ, କଟକ ପୁରୀ ଓ ଯାଜପୁର ଅପେକ୍ଷା ନୂତନ ନଗର ଏବଂ ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀରେ ଏହା ନଗର ଆକାର ଧାରଣ କରି ଓଡ଼ିଶାର ରାଜଧାନୀରେ ପରିଣତ ହେଲା । ବାରବାଟୀ ଦୁର୍ଗ ନିଶ୍ଚୟ ଏହା ପରେ ନିର୍ମିତ ହୋଇଥିଲା । ପୂର୍ବରେ କୁହା ଯାଇଅଛି ଯେ, କେଶରୀବଂଶର ଶେଷ ନରପତି ସୁବର୍ଣ୍ଣକେଶରୀ ଚୋଡ଼ଗଙ୍ଗ ଦେବଙ୍କର ଆକ୍ରମଣ ସମୟରେ ବଡ଼ାନାସୀ ଦୁର୍ଗରେ ବାସ କରୁଥିଲେ । ବଡ଼ାନାସୀ ତାହାଙ୍କର ରାଜଧାନୀ ଥିଲା । ବାରବାଟୀ ଦୁର୍ଗର ନିର୍ମାଣ ସେତେବେଳକୁ ହୋଇ ନ ଥିଲା । ଯଦି ବାରବାଟୀ ଦୁର୍ଗ ନିର୍ମିତ ହୋଇଥାନ୍ତା ତାହାହେଲେ ରାଜା ନିଶ୍ଚୟ ସେହିଠାରେ ବାସ କରିଥାନ୍ତେ । କାରଣ ବଡ଼ାନାସୀଠାରୁ ବାରବାଟୀ ଅତ୍ୟନ୍ତ ଅଧିକ ସୁରକ୍ଷିତ ସ୍ଥାନ । ଏକ ଦିଗରେ ଚୌଦ୍ୱାର ଦୁର୍ଗ ଓ ନଦୀ, ଅନ୍ୟ ଦିଗରେ ନଦୀ ଓ ବଡ଼ାନାସୀ ଦୁର୍ଗ ଏବଂ ଦକ୍ଷିଣ ଦିଗକୁ ନଦୀ ଓ ସାରଙ୍ଗ ଗଡ଼ ଥିଲା । ଅତଏବ କୌଣସି ଦିଗରୁ ଶତ୍ରୁ ଆକ୍ରମଣର ଭୟ ନ ଥିଲା । ଏଥିରୁ ଅନୁମିତ ହୁଏ ଯେ, କେଶରୀ ବଂଶୀୟ ରାଜତ୍ୱକାଳରେ ବାରବାଟୀ ଦୁର୍ଗ ନିର୍ମିତ ହୋଇ ନ ଥିଲା । ଓଡ଼ିଶାର ଇତିହାସ ଲେଖକମାନଙ୍କ ବର୍ଣ୍ଣନାରୁ ଏହି ଅନୁମାନ ସିଦ୍ଧ ବୋଲି ପ୍ରତୀୟମାନ ହୁଏ ।

ଶ୍ରୀ ଚୈତନ୍ୟଚରିତାମୃତରୁ ଜଣାଯାଏ ଯେ, ଶ୍ରୀକୃଷ୍ଣଚୈତନ୍ୟ କଟକରେ ପ୍ରବେଶ କରି ତତ୍କାଳୀନ ରାଜା ପ୍ରତାପରୁଦ୍ର ଦେବଙ୍କ ସଙ୍ଗେ ଏହି ବାରବାଟୀ ଦୁର୍ଗରେ ସାକ୍ଷାତ୍ କରିଥିଲେ । ତାହାଙ୍କର ପୂର୍ବବର୍ତ୍ତୀ ରାଜା ପୁରୁଷୋତ୍ତମ ଦେବ ମଧ୍ୟ ବାରବାଟୀରେ ବାସ କରୁଥିବାର ଉକ୍ତ ଗ୍ରନ୍ଥରୁ ପରିଚୟ ମିଳେ । ଶ୍ରୀ ଚୈତନ୍ୟ ଚରିତାମୃତର ମଧ୍ୟ ଲୀଳାରେ ବର୍ଣ୍ଣିତ ଅଛି :—

"ଏହି ମତ ଚଳି ଚଳି କଟକ ଅଇଲା ।
ସାକ୍ଷୀ ଗୋପାଳ ଦେଖି ସେ ଦିନ ରହିଲା ।।
ସାକ୍ଷୀ ଗୋପାଲେର କଥା କହେ ନିତ୍ୟାନନ୍ଦ ।
ଶୁନିୟା ବୈଷ୍ଣବ ମନେ ବାଢ଼ିଲ ଆନନ୍ଦ ।।"
(୧୭ଶ ପରିଚ୍ଛେଦ)

ଅନ୍ୟତ୍ର,—

"କଟକ ଆସିୟା କୈଲ ଗୋପାଳ ଦର୍ଶନ ।
ସ୍ୱପ୍ନେଶ୍ୱର ବିପ୍ର କୈଲ ପ୍ରଭୁର ନିମନ୍ତ୍ରଣ ।।"

ଏଥିରୁ ଅନୁମିତ ହୁଏ ଯେ, ରାଜା ପୁରୁଷୋତ୍ତମ ଦେବ କାଞ୍ଚି ଜୟ କରି ଚତଡ୍ୟ ସାକ୍ଷୀଗୋପାଳଙ୍କୁ ଯେଉଁ ଆସି ବାରବାଟୀ ଦୁର୍ଗ ମଧ୍ୟରେ ରଖାଇଥିଲେ । ସେଠାରେ ସେ ବାସ କରୁନଥିଲେ ସାକ୍ଷୀ ଗୋପାଳଙ୍କୁ ସେଠାରେ ନ ରଖି ଅନ୍ୟତ୍ର ରଖାଇ ପାରିଥାନ୍ତେ । ରାଧାନାଥ "ଚିଲିକା"ରେ ମଧ୍ୟ କହନ୍ତି :—

"କାହିଁ ଅଭିଯାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟ ନାଦେ ଦେଉଥିଲା ପ୍ରତିଧ୍ୱନି ।"

ଏଥିରୁ ଅନୁମାନ କରାଯାଏ, ବାରବାଟୀ ଦୁର୍ଗ ପୁରୁଷୋତ୍ତମ ଦେବଙ୍କ ରାଜଧାନୀ ଥିଲା; ଏବଂ କାଞ୍ଚି ଯୁଦ୍ଧ ନିମନ୍ତେ ବାରବାଟୀରୁ ସୈନ୍ୟ ପ୍ରେରିତ ହୋଇଥିଲେ । ଆଇନୀ ଆକବରୀ ପ୍ରଣେତା ଆବୁଲଫଜଲ କହନ୍ତି ଯେ, ତାଙ୍କ ବଂଶୀୟ ପଞ୍ଚମ ନରପତି ଅନଙ୍ଗଭୀମଦେବ ବାରବାଟୀ ଦୁର୍ଗ ନିର୍ମାଣ କରାଇଥିଲେ । ଆବୁଲଫଜଲଙ୍କ ଏହିମତ ପୂର୍ବବର୍ତ୍ତୀ ଓଡ଼ିଶା ଇତିହାସ ଲେଖକଗଣ ଗ୍ରହଣ କରି ଅଛନ୍ତି । ପୂର୍ବରେ ଆମ୍ଭେମାନେ କହିଅଛୁଁ, କେଶରୀବଂଶୀୟ ରାଜତ୍ୱର ଶେଷ ସମୟରେ ମଧ୍ୟ ଏ ଦୁର୍ଗ ନିର୍ମିତ ହୋଇଥିଲା । ଗଙ୍ଗବଂଶୀୟ ସୁପ୍ରସିଦ୍ଧ ନରପତି ଅନଙ୍ଗଭୀମଦେବ ଏହି ଦୁର୍ଗ ନିର୍ମାଣ କରାଇଥିବା ବିଶେଷ ସମ୍ଭବ । ଅନଙ୍ଗଭୀମଦେବ ଅବଶ୍ୟ ରାଜତ୍ୱର ପ୍ରଥମାବସ୍ଥାରେ ଯାଜପୁରରେ ବାସ କରୁଥିଲେ; କିନ୍ତୁ ଉତ୍ତର ଦିଗରୁ କ୍ରମେ ଆଫଗାନ ଆକ୍ରମଣର ଆଶଙ୍କା ଦେଖି ଗୋଟିଏ ସୁରକ୍ଷିତ ସ୍ଥାନରେ ସୁଦୃଢ଼ ଦୁର୍ଗ ନିର୍ମାଣର ଆବଶ୍ୟକତା ଅନୁଭବ କଲେ । ସେ ନିଜେ ଅତ୍ୟନ୍ତ ପରାକ୍ରମୀ ଯୋଦ୍ଧା ଥିଲେ ଏବଂ ବହୁଦେଶ ଜୟ କରି ସ୍ୱୀୟ ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ହଣ୍ଟରଙ୍କ ଓଡ଼ିଶାର ପ୍ରଥମ ଭାଗରେ ଅନଙ୍ଗଭୀମଦେବଙ୍କ ଯେ ବକ୍ତୃତା ପ୍ରଦତ୍ତ ହୋଇଅଛି, ତହିଁରୁ ଏହା ସ୍ପଷ୍ଟ ଜଣାଯାଏ । ଅତଏବ ଅନଙ୍ଗଭୀମଦେବ ଏ ଦୁର୍ଗ ନିର୍ମାଣ କରାଇଥିବା ସମ୍ପୂର୍ଣ୍ଣ ସମ୍ଭବ ।

ବିଶ୍ୱକୋଷ ପ୍ରଣେତା କହନ୍ତି, ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ରାଜା ଅନଙ୍ଗଭୀମଦେବ ଏହି ଦୁର୍ଗ ନିର୍ମାଣ କରାଇଥିଲେ । ରାଜା ଅନଙ୍ଗଭୀମଦେବ ଏହି ଦୁର୍ଗ ନିର୍ମାଣ କରାଇଥିବା ସତ୍ୟ; କିନ୍ତୁ, ବିଶ୍ୱକୋଷ ପ୍ରଣେତା ଅନଙ୍ଗଭୀମଦେବଙ୍କୁ କିପରି ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଜୀବିତ ରଖିଲେ ଏହା ବୁଝିବାକୁ ଆମ୍ଭେମାନେ ଅକ୍ଷମ । ବିଶ୍ୱକୋଷ ଗୋଟିଏ ବଡ଼ ଉପାଦେୟ ଗ୍ରନ୍ଥ । ତହିଁର ପ୍ରତ୍ୟେକ ବିଷୟ ବିଶ୍ୱାସଜନକ ହେବା ଉଚିତ । ଅନଙ୍ଗଭୀମଦେବ ଗଙ୍ଗବଂଶର ପଞ୍ଚମ ରାଜା । ଉକ୍ତ ବଂଶୀୟ ରାଜାମାନେ ୧୧୩୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ରାଜତ୍ୱ ଆରମ୍ଭ କରିଥିଲେ ଏବଂ ଓଡ଼ିଶା ଇତିହାସ ପାଠକ ମାତ୍ରେ ଜାଣନ୍ତି ଯେ, ୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ ଦ୍ୱାରା ଓଡ଼ିଶାର ସ୍ୱାଧୀନତା ଲୋପ ପାଇଥିଲା । ଉକ୍ତ ବଂଶର ପ୍ରଥମ ନରପତିଙ୍କ ଠାରୁ ଆରମ୍ଭ କରି ୧୫୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୨୮ ଜଣ ନରପତି ରାଜତ୍ୱ କରିଥିଲେ । ଅର୍ଥାତ୍ ଅନଙ୍ଗଭୀମଦେବଙ୍କ ପରେ ୨୩ ଜଣ ନରପତି ଓଡ଼ିଶା ସିଂହାସନାରୋହଣ କରିଥିଲେ । ବିଶ୍ୱକୋଷ ମତରେ ଦ୍ୱାଦଶରୁ ଚତୁର୍ଦ୍ଦଶ ଶତାବ୍ଦୀ ଏହି ୨୦୦ ବର୍ଷରେ ୫ ଜଣ ରାଜା ଏବଂ ଚତୁର୍ଦ୍ଦଶରୁ ଷୋଡ଼ଶ ଶତାବ୍ଦୀ ଏହି ୨୦୦ ବର୍ଷ ମଧ୍ୟରେ ୨୩ ଜଣ ରାଜା ରାଜତ୍ୱ କରିଥିଲେ । ଆମ୍ଭେମାନେ ଜାଣୁ ଅନଙ୍ଗଭୀମଦେବଙ୍କ ପରବର୍ତ୍ତୀ କୌଣସି କୌଣସି ରାଜା [ ଯଥା ନରସିଂହ ଦେବ, କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ] ଦୀର୍ଘକାଳ ରାଜତ୍ୱ କରି ନାନା ଦିଗରେ ଓଡ଼ିଶାର ନାମ କରାଇଥିଲେ । ପ୍ରଥମ ୫ ଜଣ ରାଜାଙ୍କୁ ସତ୍ୟ, ଦ୍ୱାପର ଆୟୁ ଦେଇ, ପରବର୍ତ୍ତୀ ୨୩ ଜଣ ରାଜାଙ୍କୁ ଏତେ ଅଳ୍ପ ସମୟ ମଧ୍ୟରେ ସିଂହାସନରୁ ବିଚ୍ୟୁତ କରିବା ବିଶ୍ୱକୋଷର ଅନୁଚିତ । ଦ୍ୱିତୀୟତଃ, ବିଶ୍ୱକୋଷ ଏ ସମ୍ବନ୍ଧରେ ଷ୍ଟର୍ଲିଙ୍ଗ୍ ଓଡ଼ିଶା ଇତିହାସର ଅନୁସରଣ କଲାପ୍ରାୟ ଜଣାଯାଏ । ଷ୍ଟର୍ଲିଙ୍ଗ୍ କହନ୍ତି ଯେ, ବୋଧହୁଏ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ଏହି ବାରବାଟୀ ଦୁର୍ଗ ଅନଙ୍ଗ-ଭୀମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଷ୍ଟର୍ଲିଙ୍ଗ୍ ନିଜେ ନିଜର ପ୍ରତିବାଦ କରିଅଛନ୍ତି । କାରଣ ତାଙ୍କ ମତରେ ଅନଙ୍ଗଭୀମଦେବ ୧୧୭୪ ଖ୍ରୀଷ୍ଟାବ୍ଦରେ ରାଜତ୍ୱ ଆରମ୍ଭ କରିଥିଲେ । ଏହା ଯଦି ସତ୍ୟ ହୁଏ, ତାହାହେଲେ ଅନଙ୍ଗଭୀମଦେବ ଦ୍ୱାଦଶ ଶତାବ୍ଦୀର ଲୋକ, ସେ କିପରି ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଜୀବିତ ରହିଲେ ? ଅନଙ୍ଗଭୀମଦେବ ୧୨୦୨ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କରିଥିବାର ସେ ସ୍ୱୀକାର କରନ୍ତି । ତାହାହେଲେ ସେ କଦାପି ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଜୀବିତ ନଥିଲେ । ଅତଏବ ବାରବାଟୀ ଦୁର୍ଗ ୧୪ଶ ଶତାବ୍ଦୀରେ ନିର୍ମିତ ହୋଇ ନଥିଲା । ତୃତୀୟତଃ, ବିଶ୍ୱକୋଷ କୋଣାର୍କ ସ୍ଥଳରେ କହନ୍ତି ଯେ, ନରସିଂହ ଦେବ ୧୨୦୪ ଶକାବ୍ଦରେ ଏ ମନ୍ଦିର ନିର୍ମାଣ କରାଇଥିଲେ । ଆମ୍ଭେମାନେ ଜାଣୁ ଖ୍ରୀଷ୍ଟୀୟ ୭୮ ଅବ୍ଦରୁ ଶକାବ୍ଦ ଗଣନା ଆରମ୍ଭ ହୋଇଥିଲା । ତାହାହେଲେ କୋଣାର୍କ କାର୍ଯ୍ୟ

୧୨୦୪ ଶକାବ୍ଦ ଅର୍ଥାତ୍ ୧୨୮୨ ଖ୍ରୀଷ୍ଟାବ୍ଦରେ ନିଷ୍ପନ୍ନ ହୋଇଥିଲା । ଅନଙ୍ଗଭୀମଦେବଙ୍କ ପୌତ୍ର ନରସିଂହ ଦେବ ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀରେ କୋଣାର୍କ କାର୍ଯ୍ୟ ଶେଷ କରିବାସ୍ଥଲେ, ଅନଙ୍ଗଭୀମଦେବ କପରି ୧୪ଶ ଶତାବ୍ଦୀରେ ନିଜକାର୍ଯ୍ୟ ବାରବାଟୀ ଦୁର୍ଗ ନିର୍ମାଣ କରାଇ ପାରିଲେ ? ଅତଏବ ବିଶ୍ୱକୋଷ, ତଥା ଷ୍ଟର୍ଲିଙ୍ଗ୍ ମତରେ ୧୬ଶ ଶତାବ୍ଦୀରେ ବାରବାଟୀ ନିର୍ମିତ ହେବା ବିଷୟ ଭ୍ରମାତ୍ମକ [୧]। ଅନଙ୍ଗଭୀମଦେବ ହଣ୍ଟରଙ୍କ ମତରେ ୧୧୭୫ ରୁ ୧୨୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ (ଷ୍ଟର୍ଲିଙ୍ଗ୍‌ଙ୍କ ମତରେ ୧୧୭୬ରୁ ୧୨୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ରାଜତ୍ୱ କରିଥିଲେ । ସେ କଦାପି ମରଣେ ପନ୍ଦ୍ରକୁ ଦୁର୍ଗ ନିର୍ମାଣ କରାଇ ନ ଥିବେ । ଦୁର୍ଗ ନିର୍ମାଣ କରି କେତେଦିନ ତନ୍ମଧ୍ୟରେ ବାସ କରିବା ଅଭିପ୍ରାୟରେ ସେ ଏହି କାର୍ଯ୍ୟ କରିଥିବେ; ବୃଦ୍ଧ ଜରାଜୀର୍ଣ୍ଣ ଅବସ୍ଥାରୁ ଦୁର୍ଗ ନିର୍ମାଣ କରିବା ତାହାଙ୍କର ପ୍ରବୃତ୍ତି ହୋଇ ନ ଥିବ । ଏହା ନିଶ୍ଚୟ ୧୨୦୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ନିର୍ମିତ ହୋଇଥିବ । ଅତଏବ ଆମ୍ଭମାନଙ୍କର ବିଶ୍ୱାସ ଯେ, ବାରବାଟୀ ଦୁର୍ଗ ଅନଙ୍ଗଭୀମଦେବଙ୍କ ଦ୍ୱାରା ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ନିର୍ମିତ ହୋଇଥିଲା ଏବଂ ଷ୍ଟର୍ଲିଙ୍ଗ୍ ଓ ବିଶ୍ୱକୋଷ ପ୍ରଣେତାଙ୍କ ମତ ଅର୍ଥାତ୍ ୧୬ଶ ଶତାବ୍ଦୀରେ ନିର୍ମିତ ହୋଇଥିବା କଦାପି ପ୍ରମାଣିତ ହୋଇ ନ ପାରେ ।

---

[୧] "Statistical Account of Bengal, Vol. XVII I, Cuttack District" ହଣ୍ଟର ମଧ୍ୟ ଷ୍ଟର୍ଲିଙ୍ଗଙ୍କର ଅନୁସରଣ କରି ଏହି ପ୍ରକାର ଭ୍ରମୋକ୍ତି ପ୍ରକାଶ କରିଅଛନ୍ତି ।

ଶ୍ରୀଯୁକ୍ତ ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ ସୁପ୍ରଣୀତ ନବପ୍ରକାଶିତ "ଭାରତଭ୍ରମଣ" ଗ୍ରନ୍ଥରେ ବିଶ୍ୱକୋଷକୁ ଅନୁକରଣ କରି ଉକ୍ତ ପ୍ରକାର ଭ୍ରମ କରିଅଛନ୍ତି ।

# ତୃତୀୟ ଅଧ୍ୟାୟ

( ବାରବାଟୀର ଇତିହାସ)

ଏହି ବାରବାଟୀ ଉତ୍କଳ ଇତିହାସର ପ୍ରଧାନ ରଙ୍ଗସ୍ଥଳୀ ଥିଲା । ଉତ୍କଳର କେତେ କେତେ ନରପତି ଏହାର କୋଳରେ ଆଶ୍ରୟ ନେଇ ଲାଳିତ ପାଳିତ ଏବଂ କେତେ କେତେ ବିରାଟ ଘଟଣା ଏହାର ପାର୍ଶ୍ୱରେ ସଙ୍ଘଟିତ ହୋଇ ଓଡ଼ିଆ ଜାତିର ମହତ୍ତ୍ୱ ଭାରତ ଇତିହାସରେ ଟେକି ରଖିଅଛି । ଉତ୍କଳର ଭାଗ୍ୟଶ୍ରୀ ଏହି ବାରବାଟୀ ଦୁର୍ଗ ଉପରେ ବହୁକାଳ ପର୍ଯ୍ୟନ୍ତ ନିର୍ଭର କରିଥିଲା । ବଡ଼ାକାଠି, ଚୌଦ୍ୱାର ଓ ସାରଙ୍ଗଗଡ଼ ଏବଂ ଚତୁର୍ଦ୍ଦିଗରେ ସୁଶୋଭିତ ଓ ସୁପ୍ରଶସ୍ତ ନଦୀ ଦ୍ୱାରା ବେଷ୍ଟିତ ହୋଇ ବାରବାଟୀ ଦୁର୍ଗ ଉତ୍କଳକୁ ବହିଃଶତ୍ରୁମାନଙ୍କ କବଳରୁ ପର୍ଯ୍ୟନ୍ତ ରକ୍ଷା କରି ପାରିଥିଲା ଏବଂ ଭାରତର ଅନ୍ୟାନ୍ୟ ପ୍ରଦେଶ ଯେତେବେଳେ ମୁସଲମାନ ଓ ମୋଗଲ ହସ୍ତରେ ଭିକ୍ଷାର୍ଥୀ ଥିଲେ, ସେତେବେଳେ ଉତ୍କଳକୁ ସ୍ୱାଧୀନତା ଦେବୀଙ୍କର ପ୍ରିୟ ନିକେତନ କରି ରଖିଥିଲା । ଏହି ବାରବାଟୀ ଓଡ଼ିଆ ସେନାନୀଙ୍କର ଲକ୍ଷ୍ୟସ୍ଥଳ ଏବଂ ଉତ୍କଳ ଆକାଶର ଧ୍ରୁବତାରା ଥିଲା । ଓଡ଼ିଶା ଚତୁର୍ଦ୍ଦିଗରେ ଭୀଷଣ ସମର ସାଗରରେ ଭାସମାନ ଥିବା ସମୟରେ ତାହାର ଯୋଦ୍ଧୃବୃନ୍ଦ ଏହି ବାରବାଟୀକୁ ମାନସ ଚକ୍ଷୁରେ ଅବଲୋକନ କରି ନିଜ ନିଜ ଗତିବିଧି ନିର୍ଣ୍ଣୟ କରୁଥିଲେ । ଏହି ବାରବାଟୀ ଉତ୍କଳ ନରପତିମାନଙ୍କର ଅମୂଲ୍ୟ ସମ୍ପଦ ଓ ପରମ ଶାନ୍ତିସ୍ଥଳ, ସର୍ପର ମଣି ଏବଂ ସ୍ୱର୍ଗର ପାରିଜାତ ସଦୃଶ ଥିଲା । ଷଷ୍ଠ ଶତାଧିକ ବର୍ଷ ପର୍ଯ୍ୟନ୍ତ ଏହି ବାରବାଟୀ ଉତ୍କଳ ନରପତି ଓ ଶାସନ କର୍ତ୍ତାମାନଙ୍କର ଆଶ୍ରୟସ୍ଥଳ ଥିଲା । ଏହି ବାରବାଟୀହିଁ ଉତ୍କଳ ଏବଂ ବାରବାଟୀ ଦୁର୍ଗର ଇତିହାସହିଁ ଉତ୍କଳର ଇତିହାସ ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ରାଜା ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ ହେବାଠାରୁ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ଅଧିକାର ପର୍ଯ୍ୟନ୍ତ ବାରବାଟୀ ଦୁର୍ଗ ଓଡ଼ିଶାର ରାଜଧାନୀ ଥିଲା । ରାଜା ଅନଙ୍ଗଭୀମଦେବ ସ୍ୱୀୟ ରାଜତ୍ୱର ପ୍ରଥମାବସ୍ଥାରେ ଯାଜପୁରରେ ରାଜଧାନୀ କରିଥିଲେ; କିନ୍ତୁ ଅନ୍ତିମାବସ୍ଥାକୁ ଗୋଟିଏ ସୁରକ୍ଷିତ ସୁଦୃଢ଼ ଦୁର୍ଗ ନିର୍ମାଣ କରିବାର ଆବଶ୍ୟକତା ଅନୁଭବ କଲେ । କାରଣ ସେତେବେଳକୁ ଓଡ଼ିଶା ପ୍ରତି ମୁସଲମାନମାନଙ୍କ ଦୃଷ୍ଟି ଆକୃଷ୍ଟ ହୋଇଥିଲା, ସୁତରାଂ ସେ ବାରବାଟୀ ଦୁର୍ଗ ନିର୍ମାଣ କରି ତହିଁରେ ରାଜଧାନୀ ସ୍ଥାପନ କଲେ । ହଣ୍ଟରଙ୍କ ଓଡ଼ିଶା ଇତିହାସର ପ୍ରଥମଭାଗରେ ଅନଙ୍ଗଭୀମଦେବଙ୍କର ସ୍ୱୀୟ ସେନାପତି ଓ

ସାମନ୍ତ ରାଜାମାନଙ୍କ ପ୍ରତି ପ୍ରଚଣ୍ଡ ଯେ ବନ୍ଧୁତା ବ୍ୟବହାର କରାଯାଇ ଅଛି, ତହିଁରୁ ମଧ୍ୟ ଏ ଉକ୍ତି ସମର୍ଥିତ ହୁଏ । ତତ୍ପରେ ରାଜା ତୃତୀୟ ନରସିଂହଦେବ ବା ଲଙ୍ଗୁଳା ନରସିଂହଦେବ (୧) ଙ୍କ ରାଜତ୍ୱକାଳରେ (ଅର୍ଥାତ୍ ୧୨୩୭ ରୁ ୧୨୮୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) ଯେଉଁବେଳେ ଦାକ୍ଷିଣାତ୍ୟର ବାହ୍ମଣୀ ରାଜ୍ୟର ଅଧିପତି ହୁମାୟୁନଶାହଙ୍କ ଦ୍ୱାରା ପ୍ରପୀଡ଼ିତ ହୋଇ ତେଲିଙ୍ଗାର ହିନ୍ଦୁ ରାଜା ଓଡ଼ିଶା ରାଜାଙ୍କର ଆଶ୍ରୟ ପ୍ରାର୍ଥନା କରିଥିଲେ, ସେତେବେଳେ ରାଜା ନରସିଂହ ଦେବ ବାରବାଟୀ ଦୁର୍ଗରୁ ସସୈନ୍ୟରେ ଦାକ୍ଷିଣାତ୍ୟ ଯାତ୍ରା କରିଥିଲେ ଏବଂ ବାହ୍ମଣୀ ସୈନ୍ୟଙ୍କୁ ଏକାବେଳକେ ବିଧ୍ୱସ୍ତ କରି ଉକ୍ତ ହିନ୍ଦୁ ରାଜାଙ୍କୁ ନିର୍ଭୟରେ ରାଜତ୍ୱ କରାଇ ଦେଇଥିଲେ । ତତ୍ପରେ ବାହ୍ମଣୀର ସୁଲତାନ ହୁମାୟୁନଶାହଙ୍କ ପୁତ୍ର ନିଜାମଶାହଙ୍କ ବିରୁଦ୍ଧରେ ମଧ୍ୟ ନରସିଂହଦେବ ସୈନ୍ୟ ପ୍ରେରଣ କରିଥିଲେ ଏବଂ ସ୍ୱୟଂ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ଥାଇ ସୈନ୍ୟମାନଙ୍କୁ ଉତ୍ସାହିତ କରୁଥିଲେ । ଏହିଥର ଓଡ଼ିଆ ସୈନ୍ୟମାନେ କୋଲ୍ଲ ରାଜ୍ୟ ପର୍ଯ୍ୟନ୍ତ ଜୟ କରିଥିଲେ (୨) । ନରସିଂହଦେବଙ୍କ ଏହି ସାହସ ଦମ୍ଭରେ ବିସ୍ମିତ ହୋଇ ଷ୍ଟର୍ଲିଂ କହୁ ଅଛନ୍ତି—"The boldness and enterprise of the Orissan monarchs in those days, may surprise us when we consider the situation of Kolas in the heart of

---

[ ୧ ] Robert Sewell "Asiatic Society Journal Vol LXV Part 1, 1896ରେ ଓଡ଼ିଶାରେ ୮ ଜଣ ନରସିଂହଦେବ ରାଜତ୍ୱ କରିଥିବାର ଲେଖି ଅଛନ୍ତି, ଯଥା—

ପ୍ରଥମ ନରସିଂହଦେବ ଖ୍ରୀଷ୍ଟପୂର୍ବ ୪୨୧ରୁ ୩୦୬ ପର୍ଯ୍ୟନ୍ତ ।
୨ୟ ନରସିଂହଦେବ [କେଶରୀ] – ୧୦୧୮ରୁ ୧୦୨୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ।
୩ୟ ନରସିଂହଦେବ [ବା ଲଙ୍ଗୁଳା]—୧୨୩୭ ରୁ ୧୨୮୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ।
୪ର୍ଥ ନରସିଂହଦେବ [କେଶରୀ ନରସିଂହ]—୧୨୮୨ ରୁ ୧୩୦୭ ,,
୫ମ ନରସିଂହଦେବ [ପ୍ରତାପ ନରସିଂହ]—୧୩୦୬ ରୁ ୧୩୨୭ ,,
୬ଷ୍ଠ ନରସିଂହଦେବ [କପିଳ ନରସିଂହ]—୧୩୨୯ ରୁ ୧୩୩୦ ,,
୭ମ ନରସିଂହଦେବ [ନରସିଂହ ଜେନା]—୧୫୪୯ ରୁ ୧୫୫୦ ,,
୮ମ ନରସିଂହଦେବ ୧୬୨୮ ରୁ ୧୬୫୩ ,,

[ ୨ ] Ferishta's "History of the Dekkan"—translated by Jonathan Scott—

Vol 1 P. P. 137—164.

Central India, beyond Kalberga and Beder" (୭୭ ପୃଷ୍ଠା) ଅର୍ଥାତ୍ କୋଲବର୍ଗ ଓ ବିଦରର ଅପର ପାର୍ଶ୍ୱରେ ମଧ୍ୟଭାରତରେ କୋଣ୍ଡ ରାଜ୍ୟର ଅବସ୍ଥାନ ଦେଖିଲେ ସେତେବେଳର ଓଡ଼ିଶା ରାଜାମାନଙ୍କ ସାହସ ଓ ଉଦ୍ୟମ ଆମ୍ଭମାନଙ୍କର ବିସ୍ମୟ ଉତ୍ପାଦନ କରିବାର କଥା । ତତ୍ପରେ କପିଳେନ୍ଦ୍ର-ଦେବଙ୍କ ରାଜତ୍ୱ କାଳରେ ଏହି ବାରବାଟୀ ମଧ୍ୟ ତାହାଙ୍କର ରାଜଧାନୀ ଥିଲା ଏବଂ ଓଡ଼ିଆ ଦେଶରେ (ରାଜମହେନ୍ଦ୍ରୀ ଓ କୋଣ୍ଡାପିଲ୍ଲୀର ମଧ୍ୟବର୍ତ୍ତୀ ଦେଶ) ମଙ୍ଗଲରାୟଙ୍କ ପ୍ରାର୍ଥନାମତେ ହାମ୍ବୀରଙ୍କ ବିପକ୍ଷରେ ସିଂହାସନାରୋହଣରେ ମଙ୍ଗଳରାୟଙ୍କ ସାହାଯ୍ୟ କରିବା ନିମନ୍ତେ ୧୪୭୦ ଖ୍ରୀଷ୍ଟାବ୍ଦରେ ବାରବାଟୀ ସୈନ୍ୟ ପ୍ରେରଣ କରି ଓଡ଼ିଆଙ୍କର ବିଜୟପତାକା ଉଡ଼ାଇ ଥିଲା ଏବଂ ମଲବା ସୁଲତାନ ମହମ୍ମଦଶାହ ହାମ୍ବୀରଙ୍କ ସହିତ ସମ୍ପୂର୍ଣ୍ଣ ପରାସ୍ତ ହୋଇଥିଲେ * ।

ତଦନନ୍ତର ରାଜା ପୁରୁଷୋତ୍ତମଦେବଙ୍କ ରାଜତ୍ୱକାଳରେ (୧୪୭୯ ଖ୍ରୀଷ୍ଟାବ୍ଦରୁ ୧୫୦୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ) କାଞ୍ଚି ବିଜୟ ନିମନ୍ତେ ଏହି ବାରବାଟୀରୁ ରାଜା ସସୈନ୍ୟରେ ଯାତ୍ରା କରିଥିଲେ ଏବଂ ସେହି 'କାଞ୍ଚିଅଭିଯାନେ" ଏହି "ଦୁର୍ଗପ୍ରାଚୀରେ" "ବଦ୍ୟନାଦେ" "ପ୍ରତିଗୀର" ଦେଇଥିଲା । ପୁରୁଷୋତ୍ତମଦେବ କାଞ୍ଚୀକାବେରୀ ଜୟକରି କାଞ୍ଚିକନ୍ୟା ପଦ୍ମାବତୀଙ୍କ ସହି ତତ୍ରତ୍ୟ ସାକ୍ଷୀଗୋପାଳ ଓ ଗଣେଶ ମୂର୍ତ୍ତି ଦ୍ୱୟ ଘେନି ଆସିଥିଲେ । ଗଣେଶ ମୂର୍ତ୍ତି ସେ ଜଗନ୍ନାଥଙ୍କର ପଶ୍ଚାତ୍-ଭାଗରେ ରଖାଇ (୧) ସାକ୍ଷୀଗୋପାଳଙ୍କୁ ଏହି ବାରବାଟୀ ଦୁର୍ଗ ମଧ୍ୟରେ ରଖାଇ ଥିଲେ । ପୂର୍ବେ "ଶ୍ରୀ ଚୈତନ୍ୟଚରିତାମୃତ ଉଦ୍ଧାର କରି ଆମ୍ଭେମାନେ କହିଅଛୁଁ ଯେ, ଶ୍ରୀକୃଷ୍ଣଚୈତନ୍ୟ ଏହି ସ୍ଥାନରେ ସାକ୍ଷୀଗୋପାଳଙ୍କୁ ଦର୍ଶନ କରିଥିଲେ । ଉକ୍ତ ଗ୍ରନ୍ଥର ମଧ୍ୟଖଣ୍ଡରେ ମଧ୍ୟ ବର୍ଣ୍ଣିତ ଅଛି—

"ଏହିମତ ବିଦ୍ୟାନଗରେ ସାକ୍ଷୀଗୋପାଲ ।
ସେବା ଅଙ୍ଗୀକାର କରିଥ୍ୟାଛେନ ଚିରକାଲ ॥
ଉତ୍କଲେର ରାଜା ଶ୍ରୀପୁରଷୋତ୍ତମ ନାମ ।
ସେହି ଦେଶ ଜିତ ନିଲ କରିୟା ସଂଗ୍ରାମ ॥

---

* ପୂର୍ବ ପୃଷ୍ଠା (୨) ଚିହ୍ନିତ ନୋଟ ଦେଖ ।

(୧) "ପୁରୁଷୋତ୍ତମଦେବ ଓ ଜିକାଞ୍ଚିଗଣେଶ" ଶୀର୍ଷକ ପ୍ରବନ୍ଧରେ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ରଥ ମହାଶୟ କହନ୍ତି ଯେ, କାଞ୍ଚିଗଣେଶ ଜଗନ୍ନାଥଦେବଙ୍କର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ । ଏହା ସତ୍ୟ କି ? ଆଶା କରୁଯାଏ ରଥ ମହାଶୟ ଏହାର ପ୍ରକୃତ ତଥ୍ୟ ଅନୁସନ୍ଧାନ କରିବେ ।

ତାର ଭକ୍ତବଶେ ଗୋପାଳ ଆଜ୍ଞା ଦଲ ।
ଗୋପାଳ ଲଇଯା ସେହ କଟକ ଆଇଲ" ॥

ଏଥିରୁ ଜଣାଯାଏ ଯେ, ବର୍ତ୍ତମାନ ସତ୍ୟବାଦୀଠାରେ ସ୍ଥାପିତ ସାକ୍ଷୀଗୋପାଳ କାଞ୍ଚିରୁ ଆନୀତ ହୋଇ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ ମଧ୍ୟ ଏହ ବାରବାଟୀ ଦୁର୍ଗ ମଧ୍ୟରେ ସ୍ଥାପିତ ହୋଇଥିଲେ । (୨)

ପୁରୁଷୋତ୍ତମଦେବଙ୍କ ରାଜତ୍ୱକାଳ ଅନ୍ତେ ଉତ୍କଳର ପ୍ରବଳ ପ୍ରତାପୀ ରାଜା ପ୍ରତାପରୁଦ୍ରଦେବ ଏହ ଦୁର୍ଗକୁ ରାଜଧାନୀ କରିଥିଲେ । ଶ୍ରୀକୃଷ୍ଣଚୈତନ୍ୟ ଉତ୍କଳ ଭ୍ରମଣକାଳରେ କଟକରେ ପ୍ରବେଶ କରିବା ମାତ୍ରେ ଧର୍ମପ୍ରାଣ ପ୍ରତାପରୁଦ୍ରଦେବଙ୍କୁ ପ୍ରଧାନ ପୃଷ୍ଠପୋଷକ ସ୍ୱରୂପ ପାଇଥିଲେ । ଉତ୍କଳ ଗଜପତିଙ୍କର ଏହ ଉଦାରତା ଓ ଈଶ୍ୱରପ୍ରେମ ସ୍ତବ ଏବା ଭାରତ କାହିଁକି, ପୃଥିବୀର ଇତିହାସରେ ଏକାନ୍ତ ବିରଳ । ଶ୍ରୀକୃଷ୍ଣଚୈତନ୍ୟଙ୍କ ଈଶ୍ୱରପ୍ରତିମା ପ୍ରତିଭାରେ ବିମୁଗ୍ଧ ହୋଇ ରାଜା ପ୍ରତାପରୁଦ୍ର ଦେବ ସର୍ବପ୍ରଥମେ ବୈଷ୍ଣବଧର୍ମରେ ଦୀକ୍ଷିତ ହେଲେ । ଉତ୍କଳର ସ୍ୱନାମଧନ୍ୟ ବୈଷ୍ଣବ ଜଗନ୍ନାଥ ଦାସ ଏହାଙ୍କ ଆଶ୍ରୟରେ ଭାଗବତକୁ ଓଡ଼ିଆ ଭାଷାରେ ରଚନା କରି ସମସ୍ତ ଉତ୍କଳ ଭୂମିକୁ ବୈଷ୍ଣବ ସାମ୍ୟ ରସରେ ପ୍ଲାବିତ କରିଥିଲେ । ଚୈତନ୍ୟଙ୍କ ଧର୍ମରେ ଦୀକ୍ଷିତ ହେଲା ପରେ, ରାଜା ତାହାଙ୍କୁ ଯତ୍ନରେ ରଖାଇବା ନିମନ୍ତେ ଚୌଦ୍ୱାର ଦୁର୍ଗକୁ ପ୍ରେରଣ କରିଥିଲେ ଏବଂ ଚୈତନ୍ୟ ଯେଉଁ ସ୍ଥାନରେ ମହାନଦୀରେ ସ୍ନାନ କରି ନୌକା ସାହାଯ୍ୟରେ ଚୌଦ୍ୱାର ଯାତ୍ରା କରିଥିଲେ, ସେଠାରେ ଅଦ୍ୟାପି ଚୈତନ୍ୟଙ୍କ ସ୍ମୃତିରକ୍ଷା ନିମନ୍ତେ 'ବାଲିଯାତ୍ରା' ଅନୁଷ୍ଠିତ ହେଉଅଛି । ଶ୍ରୀ ଚୈତନ୍ୟଚରିତାମୃତରେ ବର୍ଣ୍ଣିତ ଅଛି :—

"ଦୁଇ ମହାପାତ୍ର ହରିଚନ୍ଦନ ମଙ୍ଗରାଜ ।
ତାରେ ଆଜ୍ଞା ଦଲ ରାଜା କର ସବ କାଜ ॥
ଏକ ନବ ନୌକା ଆନି ରାଖ ନଦୀତୀରେ ।
ଯାହାଁ ସ୍ନାନ କରି ପ୍ରଭୁ ଯାନ ନଦୀପାରେ ॥
ତାହାଁ ସ୍ତମ୍ଭ ରୋପଣ କର ମହାତୀର୍ଥ କରି ।
ନିତ୍ୟ ସ୍ନାନ କରିବ ତାହାଁ ତାହାଁ ଯେନ ମରି ॥
ଚତୁର୍ଦ୍ୱାରେ କରହ ଉତ୍ତମ ନବ୍ୟ ବାସ ।
ରାମାନନ୍ଦ, ଯାଅ ତୁମି ମହାପ୍ରଭୁ ପାଶ ॥
ନୌକାତେ ଚଢ଼ିଞା ପ୍ରଭୁ ହୈଲ ନଦୀ ପାର ।
ଜ୍ୟୋତ୍ସ୍ନାବତୀ ରାତ୍ରେ ଚଲି ଆଇଲ ଚତୁର୍ଦ୍ୱାର" ॥

---

[୨] ଏହ ସମ୍ବନ୍ଧରେ ସବିଶେଷ ଇତିହାସ ପରେ ଲେଖିବା ମନସ୍ଥ ରହିଲ ।

ଉପରଲିଖିତ ବର୍ଣ୍ଣନାରୁ ଚୈତନ୍ୟଙ୍କ ପ୍ରତି ପ୍ରତାପରୁଦ୍ରଦେବଙ୍କ ଶ୍ରଦ୍ଧା ଓ ଭକ୍ତିର ମଧ୍ୟ ଯଥେଷ୍ଟ ପରିଚୟ ମିଳେ । ଏହିଭଳି ଉଦାର ଓ ଧର୍ମପ୍ରାଣ ମୈଷ୍ଣବ ପ୍ରଣୋଦିତ ରାଜାଙ୍କ ଯୋଗେ ପୃଥିବୀର ଯେ କୌଣସି ଜାତିର ଇତିହାସ ଉଜ୍ଜ୍ୱଳୀକୃତ ହୋଇପାରେ । ଏହାଙ୍କ ରାଜତ୍ୱକାଳରେ ଉତ୍କଳସାହିତ୍ୟର ଯେ ଶ୍ରୀବୃଦ୍ଧି ହୋଇଅଛି ସେଥି ନିମନ୍ତେ ଏହାକୁ ଅଗଷ୍ଟାନ୍ ଯୁଗ ଆଖ୍ୟା ଦିଆ ଯାଇପାରେ । ଜଗନ୍ନାଥ ଦାସ ଉତ୍କଳ ଭାଷାର ଯେଉଁ ଆଦର୍ଶ ଦେଖାଇ ଦେଇ ଅଛନ୍ତି; ତାହା ସାଢ଼େଚାରିଶହ ବର୍ଷ ଏବଂ ଇଂରେଜ ସଭ୍ୟତା ପ୍ରଚାରର ଶତାଧିକ ବର୍ଷ ପରେ ସୁଦ୍ଧା କୌଣସି ସାହିତ୍ୟରଥୀ ପ୍ରାପ୍ତ ହୋଇପାରି ନାହାନ୍ତି ।

ଉତ୍କଳ ଇତିହାସରେ ପ୍ରତାପରୁଦ୍ରଦେବ ସର୍ବଶ୍ରେଷ୍ଠ ପରାକ୍ରମୀ ଓ ତେଜସ୍ୱୀ ରାଜା ଥିଲେ । ତାହାଙ୍କ ସମୟରେ ଉତ୍କଳ ଉତ୍ତରରେ ଗୋଠାରୁ ଆରମ୍ଭ କରି ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଥିରେ ସନ୍ତୁଷ୍ଟ ନ ହୋଇ ସେ ଦକ୍ଷିଣରେ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ଓଡ଼ିଆ ବାହୁବଳର ପରିଚୟ ଦେଇଥିଲେ । ପ୍ରତାପରୁଦ୍ର ଦାକ୍ଷିଣାତ୍ୟରେ ଦେଶ ଜୟରେ ବ୍ୟାପୃତ ଥିବା ସମୟରେ ବଙ୍ଗ ନବାବ ହୋସେନସାହାଙ୍କର ଇସମାଇଲ ଗାଜୀ ନାମକ ଜନୈକ ସୈନ୍ୟାଧ୍ୟକ୍ଷ ୧୫୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଆକ୍ରମଣ କରିଥିଲେ । ସେ କଟକରେ ବାରବାଟୀ ଦୁର୍ଗ ଅଧିକାର କରି ପୁରୀ ପର୍ଯ୍ୟନ୍ତ ଦେଶ ଲୁଣ୍ଠନ କରିଥିଲେ । ସୁଦୂର ଦାକ୍ଷିଣାତ୍ୟର କୃଷ୍ଣାନଦୀକୂଳରେ ଏହି ସମ୍ବାଦ ପାଇ ପ୍ରତାପରୁଦ୍ର ସ୍ୱଦେଶ ପ୍ରତ୍ୟାଗମନ କଲେ । ପ୍ରତାପରୁଦ୍ରଙ୍କ ସ୍ୱଦେଶ ପ୍ରତ୍ୟାଗମନ ବାର୍ତ୍ତାହିଁ କେବଳ ଲୁଣ୍ଠନକାରୀ ଇସମାଇଲ ଗାଜୀଙ୍କୁ ଓଡ଼ିଶାରୁ ବହିଷ୍କୃତ କରିବା ପାଇଁ ଯଥେଷ୍ଟ ହୋଇଥିଲା । ସେଥିନିମନ୍ତେ ପ୍ରତାପରୁଦ୍ରଙ୍କୁ ଯୁଦ୍ଧ କରିବାକୁ ପଡ଼ି ନ ଥିଲା (୧) ।

ଉତ୍କଳର ସର୍ବଶେଷ ହିନ୍ଦୁ ନରପତି ରାଜା ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ବାରବାଟୀ ଦୁର୍ଗର ବହୁ ଉନ୍ନତି ସାଧିତ ହୋଇଥିଲା । ମୁକୁନ୍ଦଦେବ ଏହି ଦୁର୍ଗ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ନବତଳ ପ୍ରାସାଦ ନିର୍ମାଣ କରାଇ ସେହିଁରେ ବାସ କରୁଥିଲେ । ଆଇନୀଆକବରୀ ପ୍ରଣେତା ଆବୁଲ ଫଜଲ ଆଲ୍ଲାମୀ ଷୋଡ଼ଶ ଶତାବ୍ଦୀର ପ୍ରାନ୍ତଭାଗରେ ଉତ୍କଳ ଭ୍ରମଣ କରି ଏହି ଦୁର୍ଗ ଓ ରାଜା ମୁକୁନ୍ଦଦେବଙ୍କ ନିର୍ମିତ ନବତଳ ପ୍ରାସାଦ ସ୍ୱଚକ୍ଷୁରେ ଦର୍ଶନ ପୂର୍ବକ ବିମୁଗ୍ଧ ହୋଇ କିପରି ସ୍ୱପ୍ରଣୀତ ଆଇନୀ ଆକବରୀରେ ତାହାର ବର୍ଣ୍ଣନ କରିଅଛନ୍ତି, ତାହା ପରେ ପ୍ରଦାନ କରିବୁଁ * । ମୁକୁନ୍ଦଦେବଙ୍କ ରାଜତ୍ୱ କାଳରେ ପ୍ରବଳପ୍ରତାପ ଆକବର ଦିଲ୍ଲୀ

(୧) ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀଙ୍କ "ଭାରତଭ୍ରମଣ" ।

* ଚତୁର୍ଥ ଅଧ୍ୟାୟରେ ।

ସିଂହାସନରେ ରାଜତ୍ୱ କରୁଥିଲେ । ଓଡ଼ିଶାର ସ୍ୱାଧୀନ ଗଜପତିଙ୍କ ପ୍ରତାପ ଓ ପରାକ୍ରମରେ ସେ ବର୍ଦ୍ଧିତ ଓ ସ୍ତମ୍ଭିତ ହୋଇ ଓଡ଼ିଶାକୁ ନିଜ ବିଶାଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାକୁ ସାହସ ନ କରି ମୁକୁନ୍ଦଦେବଙ୍କ ସହିତ ସନ୍ଧି ସ୍ଥାପନ କରିବାକୁ ବାଧ ହୋଇଥିଲେ । ବଙ୍ଗ ନବାବ ସୁଲେମାନଙ୍କ ଦମନାର୍ଥେ ସେ ଓଡ଼ିଆ ସାହାଯ୍ୟ ଭିକ୍ଷା କରିଥିଲେ । ଆକବରଙ୍କ ସଙ୍ଗେ ମିତ୍ରତା ରକ୍ଷାକରି ମୁକୁନ୍ଦଦେବ ବଙ୍ଗ ବିଜୟାର୍ଥେ ବହିର୍ଗତ ହେଲେ । ବଙ୍ଗଦେଶରେ ଯୁଦ୍ଧୋନ୍ମତ୍ତ ଥିବା ସମୟରେ ଗଡ଼ଜାତ ନିବାସୀ ମୂର୍ଖ ଅଦୂରଦର୍ଶୀ ଛିଣ୍ଡୀ ଓ ମନାଇ ମହାପାତ୍ର ନାମକ ଦୁଇଜଣ ଖଣ୍ଡାୟତ ମୁକୁନ୍ଦଦେବଙ୍କ ଉପରେ କୌଣସି ବ୍ୟକ୍ତିଗତ ଦୋଷର ପ୍ରତିଶୋଧ ନେବା ନିମନ୍ତେ ସୁଲେମାନଙ୍କ ସେନାପତି କଳାପାହାଡ଼ଙ୍କୁ ସଙ୍ଗେନେଇ ଗଡ଼ଜାତ ଜଙ୍ଗଲ ପାହାଡ଼ ମଧ୍ୟଦେଇ ବାରବାଟୀ ଦୁର୍ଗ ଆକ୍ରମଣ କରାଇଲେ । କଳାପାହାଡ଼ ଭୀମ ବିକ୍ରମରେ ଓଡ଼ିଶାରେ ଯେଉଁ ପାଶବ ଅତ୍ୟାଗ୍ରମୋନ ସଂଘଟନ କରିଥିଲା, ତାହାର ସ୍ମରଣ ବର୍ତ୍ତମାନ ଯୁଗରେ ସୁଦ୍ଧା ସ୍ତ୍ରୀ ଲୋକମାନଙ୍କ ମନରେ ଆତଙ୍କ ଉପସ୍ଥିତ କରାଏ । ସେମାନେ ଭୟରେ ଗାନ କରନ୍ତି—

"ଅଇଲା କଳାପାହାଡ଼,
ଭାଙ୍ଗିଲା ଲହାର ବାଡ଼,
ପିଇଲା ମହାନଦୀ ପାଣି,
ସୁବର୍ଣ୍ଣ ଥାଳିରେ ହାର ପରଶିଲେ
ମୁକୁନ୍ଦଦେବଙ୍କ ରାଣୀ ।"

ଏହି ଗାନରୁ ଅନୁମିତ ହୁଏ ଯେ, କଳାପାହାଡ଼ ମୁକୁନ୍ଦଦେବଙ୍କ ରାଣୀଙ୍କଠାରୁ ବହୁ ଧନରତ୍ନ ପାଇ ବାରବାଟୀ ଦୁର୍ଗର କିଛି କ୍ଷତି କରି ନ ଥିଲା । ମୁକୁନ୍ଦଦେବ ବଙ୍ଗଦେଶରେ ଏହି ସମ୍ବାଦ ପାଇ ଅବଶିଷ୍ଟ ସେନାସହ କଟକ ପ୍ରତ୍ୟାବର୍ତ୍ତନ କରୁ କରୁ ଯାଜପୁରଠାରେ ଯେଉଁ ଭୀଷଣ ଯୁଦ୍ଧ ହେଲା, ତହିଁରେ ସେ ନିହତ ହେଲେ । ବହୁରତ୍ନ ପାଇ ଯଦିଚ କଳାପାହାଡ଼ ବାରବାଟୀ ଦୁର୍ଗର କୌଣସି କ୍ଷତି କରି ନ ଥିଲା, ତଥାପି ସେ ତଦପେକ୍ଷା ଘୋରତର ଅନିଷ୍ଟ ସାଧନ କରିଦେଲା । ଉତ୍କଳର ସର୍ବଶ୍ରେଷ୍ଠ ଅମୂଲ୍ୟ ସମ୍ପଦ, ଯାହା ପ୍ରବଳ ପ୍ରତାପ ଆକବରଙ୍କୁ ସ୍ତମ୍ଭିତ କରିଥିଲା, ଯାହାଦ୍ୱାରା ଉତ୍କଳ ସେତେବେଳେ ଭାରତବର୍ଷରେ ଏକ ଅଦ୍ୱିତୀୟ ପ୍ରଦେଶ ଥିଲା ଏବଂ ବାରବାଟୀ ପରି ଶତ ଶତ ଦୁର୍ଗ ନିର୍ମାଣ କରି ଉତ୍କଳ ଯାହା ଏତେକାଳ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଭାବରେ ରଖିଥିଲା, ସେହି ସ୍ୱର୍ଗର ପାରିଜାତ ଉତ୍କଳର ସ୍ୱାଧୀନତା-ଧନ କଳାପାହାଡ଼ ଚିରକାଳ ନିମନ୍ତେ ହରଣ କଲା !!! ଧନ୍ୟ ହେ ମହାପାତ୍ର ଦ୍ୱୟ ! ଧନ୍ୟ ତୁମ୍ଭର ଗୁଣ !! ଉତ୍କଳ ଇତିହାସରେ ତୁମ୍ଭେମାନେ ଯେଉଁ କଳଙ୍କ ଦେଲ ତାହା ଯୁଗଯୁଗାନ୍ତରେ ସୁଦ୍ଧା ବିଲୁପ୍ତ ହେବନାହିଁ !!!

ଓଡ଼ିଶା ମୁସଲମାନମାନଙ୍କର ଅଧିକାର ଭୁକ୍ତ ହେଲା ଏବଂ ଓଡ଼ିଆ 'ଗଜପତି ସିଂହ' ଗଠିତ ବାରବାଟୀ ପରବର୍ତ୍ତୀ ଯୁଗରେ କେତେ କେତେ ଅନ୍ତର୍ବିବାଦ ନିଜ ବକ୍ଷରେ ସ୍ଥାନ ଦେଲା ଏବଂ ମୁକୁନ୍ଦଦେବଙ୍କ ସୁରମ୍ୟ ନବତଳ ଅଟ୍ଟାଳିକା ମୁସଲମାନମାନଙ୍କର ବିଳାସଭବନରେ ପରିଣତ ହେଲା । ୧୫୭୪ ଖ୍ରୀଷ୍ଟାବ୍ଦରେ ଜଳେଶ୍ୱର ନିକଟବର୍ତ୍ତୀ ମୋଗଲମାରି ଯୁଦ୍ଧ ପରେ କଟକରେ ଯେଉଁ ସନ୍ଧି ସ୍ଥାପିତ ହେଲା, ତଦ୍ଦ୍ୱାରା ଦାଉଦ ବଙ୍ଗ, ବହାର ଆକବରଙ୍କୁ ଅର୍ପଣ କରି ନିଜେ ଓଡ଼ିଶାର ଶାସନକର୍ତ୍ତା ହେଲେ । ୧୫୯୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଶାସନକର୍ତ୍ତା କୁତୁଲ୍ ଖାଁ ପୂର୍ବ ସନ୍ଧି ଭଗ୍ନ କରନ୍ତେ, ରାଜା ମାନସିଂହଙ୍କ ଅଧୀନସ୍ଥ ମୋଗଲସୈନ୍ୟ ଜଳେଶ୍ୱର, ବାରବାଟୀ ଓ ଆଳି ଦୁର୍ଗମାନ ଅଧିକାର କଲେ । ସାରଙ୍ଗଗଡ଼ରେ ଆଫଗାନ ସୈନ୍ୟମାନେ ମୋଗଲ ସୈନ୍ୟମାନଙ୍କୁ ବହିଷ୍କୃତ କରିବାର ଶେଷ ଚେଷ୍ଟା କରି ପରିଶେଷରେ ପରାସ୍ତ ହୁଅନ୍ତେ, ଓଡ଼ିଶା ତଥା ବାରବାଟୀ ଆକବରଙ୍କ ହସ୍ତଗତ ହେଲା । ୧୭୨୫ ଖ୍ରୀଷ୍ଟାବ୍ଦରେ ମହମ୍ମଦ ତାକି ଖାଁ ଓଡ଼ିଶାର ଶାସନକର୍ତ୍ତା ଥିଲେ, ଖୋରଧା ରାଜା ରାମଚନ୍ଦ୍ର ଦେବ ତାହାଙ୍କ ସଙ୍ଗେ ବିଦ୍ରୋହାଚରଣ କରନ୍ତେ, ପରାସ୍ତ ହୋଇ ଏହି ବାରବାଟୀ ଦୁର୍ଗ ମଧ୍ୟରେ ବନ୍ଦୀ ହେଲେ ଏବଂ ଯେଉଁ ନବତଳ ପ୍ରାସାଦରେ ସେ ଦୁଗ୍ଧଫେନ ଶଯ୍ୟାରେ ମହାନନ୍ଦରେ ଶୟନ କରୁଥାନ୍ତେ, ସେହି ସୁରମ୍ୟ ପ୍ରାସାଦ ତାହାଙ୍କ ପ୍ରତି ହିଂସ୍ରପଶୁସଂକୁଳ ଅରଣ୍ୟ ପ୍ରାୟ ହେଲା । ୧୭୪୦ ଖ୍ରୀଷ୍ଟାବ୍ଦରେ ବଙ୍ଗର ନବାବ ଅଲ୍ଲିବର୍ଦ୍ଦି ଖାଁ ମୁର୍ଶିଦକୁଲି ଖାଁଙ୍କୁ ବାଲେଶ୍ୱର ନିକଟରେ ପରାସ୍ତ କରି, ବାରବାଟୀ ଦୁର୍ଗ ଅଧିକାର କଲେ ଏବଂ ସ୍ୱୀୟ ଭ୍ରାତୁଷ୍ପୁତ୍ର ସଇଦ ଅହମ୍ମଦଙ୍କୁ ଓଡ଼ିଶାର ଶାସନ କାର୍ଯ୍ୟରେ ନିଯୁକ୍ତ କଲେ । ଅହମ୍ମଦ ଅତ୍ୟନ୍ତ ପ୍ରଜାପୀଡ଼କ ହେବାରୁ, ଓଡ଼ିଆ ସ୍ୱାଧୀନତାର ପୁନଃ ବିକାଶ ହେଲା । ଓଡ଼ିଆମାନେ ଗ୍ରାମ ବିକ୍ରମରେ ପୁନର୍ବାର ଜାଗ୍ରତ ହେଲେ ଏବଂ ବାରବାଟୀ ଦୁର୍ଗ ଆକ୍ରମଣ ପୂର୍ବକ ଅହମ୍ମଦଙ୍କୁ ତହିଁରେ ବନ୍ଦୀ କରି ଖୋରଧା ରାଜା ରାମଚନ୍ଦ୍ର ଦେବଙ୍କ ଅପମାନରୁ ନିଜକୁ କ୍ଷାଳିତ କଲେ । ବକୀର ଖାଁ ନାମକ ଜଣେ ସୈନ୍ୟାଧ୍ୟକ୍ଷ ଓଡ଼ିଶା କବ୍ଜା କରନ୍ତେ, ଆଲିବର୍ଦ୍ଦି ତାହାଙ୍କୁ ବାରବାଟୀ ଦୁର୍ଗ ନିକଟସ୍ଥ ମହାନଦୀ କୂଳରେ ପରାସ୍ତ କରି ସଇଦ ଅହମ୍ମଦଙ୍କୁ ଉଦ୍ଧାର କଲେ ଏବଂ ମହମ୍ମଦ ମସୁମ ଖାଁ ଓଡ଼ିଶାର ଡେପୁଟୀଗଭର୍ଣ୍ଣର ନିଯୁକ୍ତ ହେଲେ । ୧୭୪୧ ଖ୍ରୀଷ୍ଟାବ୍ଦରେ ଭାସ୍କର ପଣ୍ଡିତଙ୍କ ଅଧୀନରେ ମରହଟ୍ଟାମାନେ ବାରବାଟୀ ଦୁର୍ଗ ଆକ୍ରମଣ କରି ମସୁମଙ୍କୁ ନିହତ କଲେ ଏବଂ ପରିଶେଷରେ ସେ ସସୈନ୍ୟରେ ଦୂରୀଭୂତ ହେଲେ । ୧୭୪୫ ଖ୍ରୀଷ୍ଟାବ୍ଦରେ ରଘୁଜି ଭେଁାସଲା ଏହି ଦୁର୍ଗ ହସ୍ତଗତ କଲେ । ୧୭୫୦ ଖ୍ରୀଷ୍ଟାବ୍ଦରେ ରଘୁଜୀଙ୍କ ପୁତ୍ର ଜାନୋଜି ବାରବାଟୀର ସୁରକ୍ଷଣ ନିମନ୍ତେ ଏକଦଳ ସୈନ୍ୟ ରଖାଇ ନାଗପୁର ପ୍ରସ୍ଥାନ କଲେ । ଅଲିବର୍ଦ୍ଦି ମରହଟ୍ଟାମାନଙ୍କୁ ଦୂରୀକୃତ କରିବାର ଚେଷ୍ଟା କରି ପରିଶେଷରେ ପରାସ୍ତ ହୋଇ ପଳାୟନ କଲେ । ଏହିରୂପେ ବାରବାଟୀ

ମରହଟ୍ଟାମାନଙ୍କର ରାଜଧାନୀ ହେଲା । ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ମରହଟ୍ଟା ରାଜତ୍ୱ ପରେ ୧୮୦୩ରେ ବାରବାଟୀ ଦୁର୍ଗ ଇଂରେଜମାନଙ୍କ ଦ୍ୱାରା ବେଷ୍ଟିତ ହେଲା । ଇଂରେଜ ସୈନ୍ୟ ଲାଲବାଗ୍ (ବର୍ତ୍ତମାନ ଯେଉଁଠାରେ କଲେକ୍ଟର କଚେରୀ ଓ କମିଶନର କୋଠି ସ୍ଥାପିତ ହୋଇଅଛି) ଦେଇ ବାରବାଟୀ ଆକ୍ରମଣପୂର୍ବକ ଅଧିକାର କଲେ । ଏହିରୂପେ ବାରବାଟୀ ଦୁର୍ଗ ଓଡ଼ିଶା ଇତିହାସରେ ୭୦୦ ବର୍ଷରୁ ଅଧିକ ସମୟ ଅତି ଉଚ୍ଚସ୍ଥାନ ଅଧିକାର କରିଥିଲା । କେତେ ରାଜା, କେତେ ସେନା, ସେନାପତି, ବାରବାଟୀ କ୍ଷେତ୍ରରେ ନିଜ ନିଜ ପ୍ରତାପ ଦେଖାଇ ଇହଲୀଳା ସାଙ୍ଗ କଲେ; କିନ୍ତୁ ବାରବାଟୀ କେବଳ "କାଲେ କାଲେ ନଶ୍ୱର ନରର" କେତେ "ଭାଙ୍ଗିବାର ଲୀଳା" ଦେଖି ଆସୁଥିଲା ମାତ୍ର ।

—※—

## ଚତୁର୍ଥ ଅଧ୍ୟାୟ

### (ବାରବାଟୀର ନବତଳ ପ୍ରାସାଦ ଓ ଓଡ଼ିଶାର ଇତିହାସ ଲେଖକଗଣ)

ପୂର୍ବରେ * କୁହା ଯାଇଅଛି ଯେ, ବାରବାଟୀ ଦୁର୍ଗ ମଧ୍ୟରେ ରାଜା ମୁକୁନ୍ଦଦେବ ଗୋଟିଏ ପ୍ରକାଣ୍ଡ ନବତଳ ପ୍ରାସାଦ ନିର୍ମାଣ କରାଇ ତହିଁରେ ବାସ କରୁଥିଲେ । ଆବୁଲ ଫଜଲ ଆଲ୍ଲାମୀ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶା ଭ୍ରମଣକାଳରେ ଏହି ଦୁର୍ଗ ସ୍ୱ ଚକ୍ଷୁରେ ଦେଖି ସ୍ୱରଚିତ "ଆଇନ ଆକବରୀ"ରେ ନିମ୍ନଲିଖିତ ରୂପେ ଏହାର ବର୍ଣ୍ଣନା କରି ଅଛନ୍ତି —

'ଏହି ବାରବାଟୀ ଦୁର୍ଗ ମଧ୍ୟରେ ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ ଗୋଟିଏ ନବତଳ ପ୍ରାସାଦ ଅଛି । ଏହାର ପ୍ରଥମ ତଳ ହସ୍ତୀ, ଓଟ, ଘୋଟକ ପ୍ରଭୃତି ପାଳିତ ପଶୁମାନଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ ଅଛି । ଦ୍ୱିତୀୟ ତଳରେ ଗୋଳାଗୁଳି ଓ ଅନ୍ୟାନ୍ୟ ଯୁଦ୍ଧୋପକରଣ ରକ୍ଷିତ ଅଛି; ଏହି ତଳ ଦୁର୍ଗ ରକ୍ଷକ ଓ ଅନ୍ୟାନ୍ୟ ପ୍ରହରୀମାନଙ୍କ ବାସସ୍ଥାନ । ତୃତୀୟ ତଳରେ ଦ୍ୱାରୀ ଓ ଅନ୍ୟାନ୍ୟ ଆଜ୍ଞାବାହକମାନେ ଥାନ୍ତି । ଚତୁର୍ଥ ତଳ ନାନାପ୍ରକାର କୌଶଳସମ୍ପନ୍ନ କାରୁକାରଙ୍କ ନିମନ୍ତେ ନିର୍ଦ୍ଦିଷ୍ଟ । ପଞ୍ଚମ ତଳରେ ରନ୍ଧନଶାଳା । ନାନା ଭଦ୍ର ବ୍ୟକ୍ତି ତଥା ଅଭ୍ୟାଗତମାନଙ୍କ ସଙ୍ଗେ ଦେଖା ସାକ୍ଷାତ୍ ଓ କଥୋପକଥନ ଏବଂ ରାଜଦରବାର ପ୍ରଭୃତି ନିମନ୍ତେ ଷଷ୍ଠ ତଳ

* ତୃତୀୟ ଅଧ୍ୟାୟ ।

ବ୍ୟବହୃତ ହୁଏ । ସପ୍ତମ ତଳରେ ରାଜାଙ୍କର ପାଣନାଶକ ଓ ଗୋପନୀୟ କାର୍ଯ୍ୟମାନ ସାଧିତ ହୁଏ । ଅନ୍ତଃପୁର ମହିଳାମାନେ ଅଷ୍ଟମ ତଳରେ ବାସ କରନ୍ତି ଏବଂ ନବମ ତଳରେ ରାଜାଙ୍କର ଶୟନାଗାର ।'

ରାଜା ମୁକୁନ୍ଦଦେବଙ୍କର ଏହି ମନୋରମ୍ୟ ପ୍ରକାଣ୍ଡ ନବତଳ ପ୍ରାସାଦ ସମ୍ବନ୍ଧରେ ଉତ୍କଳ-ପ୍ରତ୍ନତତ୍ତ୍ୱ ସନ୍ଧିତ୍ସୁମାନଙ୍କ ମଧ୍ୟରେ ଘୋର ଆନ୍ଦୋଳନ ଉପସ୍ଥିତ ହୋଇଅଛି । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ପ୍ରଣୀତ Antiquities of Orissa ନାମକ ପୁସ୍ତକରେ ଏହାର ସତ୍ୟତା ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରନ୍ତି । ସେ କହନ୍ତି, ଆଇନୀ ଆକବରୀରେ ଯେପରି ବର୍ଣ୍ଣିତ ଅଛି ଏହି ପ୍ରାସାଦ ସେହିପରି ନବତଳ ବିଶିଷ୍ଟ ହୋଇ ନଥିବ । ଏହା ଗୋଟାଏ ସାଧାରଣ ଗୃହ ହୋଇଥିବ ଏବଂ ଗୃହମାନ ଉପର୍ଯ୍ୟୁପରି ନିର୍ମିତ ନହୋଇ ଶ୍ରେଣୀ ଶ୍ରେଣୀ ହୋଇ ନିର୍ମିତ ହୋଇଥିବ । ଗୋଟିଏ ଶ୍ରେଣୀ ଗୃହ ଓ ତାପରେ ଗୋଟିଏ ପ୍ରାଙ୍ଗଣ ଏବଂ ତତ୍ପରେ ଅନ୍ୟ ଏକ ଶ୍ରେଣୀ ଗୃହ, ଏହିଭଳି ୯ଟି ଶ୍ରେଣୀ ଗୃହ ସେମାନଙ୍କ ମଧ୍ୟରେ ୮ଟି ପ୍ରାଙ୍ଗଣ ଥାଇ ନିର୍ମିତ ହୋଇଥିବା ବିଶେଷ ସମ୍ଭବ । ଯୁକ୍ତି ଛଳରେ ସେ କହନ୍ତି ଯେ, ଉପର୍ଯ୍ୟୁପରି ନବତଳ ପ୍ରାସାଦ ନିର୍ମିତ ହୋଇ ନଥିବ; କାରଣ ପ୍ରତ୍ୟେକ ତଳ ଯେପରି ବ୍ୟବହୃତ ହେଉଥିଲା ତାହା ଦେଖିଲେ ଏଭଳି ପ୍ରାସାଦ ଅସମ୍ଭବ ବୋଧହୁଏ । ଦୃଷ୍ଟାନ୍ତ ସ୍ୱରୂପ ପଞ୍ଚମ ଓ ଷଷ୍ଠ ତଳର ବ୍ୟବହାର ସେ ବିଚାର କରନ୍ତି । ଷଷ୍ଠ ତଳ ଭଦ୍ରବ୍ୟକ୍ତିଙ୍କ ସଙ୍ଗେ ସମ୍ଭାଷଣ ଓ ଆଗନ୍ତୁକ ଭିନ୍ନଦେଶୀୟ ରାଜଦୂତଙ୍କ ଅଭ୍ୟର୍ଥନା ଏବଂ ରାଜଦରବାର ନିମନ୍ତେ ନିର୍ଦ୍ଦିଷ୍ଟ ଥିଲା ଏବଂ ତାହାର ନିମ୍ନରେ ପଞ୍ଚମ ତଳ ରନ୍ଧନଶାଳା ଥିଲା । ରନ୍ଧନଶାଳାର ଧୂମାଦି ଷଷ୍ଠ ତଳରେ ବ୍ୟାପ୍ତ ହେଉ ଥିବ । ଉତ୍କଳର ଗଜପତି ରାଜା ଏଡ଼େ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଷଷ୍ଠ ତଳରେ କିପରି ସାଦର ସମ୍ଭାଷଣ କରୁଥିଲେ । ଗୃହଗୁଡ଼ିକ ଶ୍ରେଣୀ ଶ୍ରେଣୀ ହୋଇ ନିର୍ମିତ ହୋଇ ନଥିଲେ ଏଭଳି ବନ୍ଦୋବସ୍ତ ବଡ଼ ଅସୁବିଧାଜନକ । ଅତଏବ ସେ କହନ୍ତି, ଏ ପ୍ରାସାଦ ଉପର୍ଯ୍ୟୁପରି ନବତଳ ବିଶିଷ୍ଟ ହୋଇ ନିର୍ମିତ ହୋଇଥିବା ଅସମ୍ଭବ ।

ପ୍ରତ୍ୟକ୍ଷ୍ୟ ଓ ଅନୁମାନ ମଧ୍ୟରେ ଯେ ପ୍ରଭେଦ, ଆବୁଲ ଫଜଲ ଆଲ୍ଲାମି ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ ମଧ୍ୟରେ ସେହି ପ୍ରଭେଦ । ଅନୁମାନ ଯେତେ ଯୁକ୍ତିସଙ୍ଗତ ହେଉ ପଛକେ, ପ୍ରତ୍ୟକ୍ଷ୍ୟଠାରୁ କଦାପି ଅଧିକ ସତ୍ୟଜନକ ହୋଇ ନପାରେ । ଆବୁଲ ଫଜଲ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ସ୍ୱଚକ୍ଷୁରେ ବାରବାଟୀ ଦର୍ଶନ କରି ଏହାର ବର୍ଣ୍ଣନା କରି ଅଛନ୍ତି । ରାଜେନ୍ଦ୍ରଲାଲ ମିତ୍ର ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀରେ ଅନୁମାନ ରାଜ୍ୟରେ ଭ୍ରମଣ କରି ଅଛନ୍ତି । ଟିକିଏ ବିଚାର କରି

ଦେଖି ତପିଲେ ରାଜେନ୍ଦ୍ରଲାଲ ମିତ୍ରଙ୍କ ଯୁକ୍ତି ଅତ ସମୀଚୀନ ବୋଧହୁଏ ନାହିଁ। ଯଦି ରାଜେନ୍ଦ୍ରଲାଲ ମିତ୍ରଙ୍କ ଅନୁମାନ ଅନୁସାରେ ଗୃହଗୁଡ଼ିକ ଏକ ଶାହାଲ ପରେ ଅନ୍ୟ ଏକ ଶାହାଲ ଏବଂ ପ୍ରତି ଦୁଇ ଶାହାଲ ମଧ୍ୟରେ ଗୋଟିଏ ପ୍ରାଙ୍ଗଣ—ଏହି-ଭଳି ନିର୍ମିତ ହୋଇଥିଲା, ତାହାହେଲେ ସେହି ଗୃହମାନଙ୍କର ବ୍ୟବହାରର ବନ୍ଦୋବସ୍ତ ଆହୁରି ଅଧିକ ଅସୁବିଧାଜନକ ହୋଇଥିବ। ମନେ କରନ୍ତୁ ଗୃହଗୁଡ଼ିକ ଉତ୍ତର ବା ଦକ୍ଷିଣରେ ନିର୍ମିତ ହୋଇଥିଲା, ଅର୍ଥାତ୍ ପ୍ରଥମ ଶାହାଲଟି ଉତ୍ତର ବା ଦକ୍ଷିଣକୁ ଏବଂ ନବମ ବା ଶେଷ ଶାହାଲଟି ଦକ୍ଷିଣ ବା ଉତ୍ତରକୁ ଥିଲା। ଆବୁଲ-ଫଜଲଙ୍କ ବର୍ଣ୍ଣନାରେ ରାଜେନ୍ଦ୍ରଲାଲଙ୍କ ସନ୍ଦେହ ଯେ, ପଞ୍ଚମ ତଳର ଦୈବନ ଶାଳା ଉପରେ ଷଷ୍ଠ ତଳରେ ଭଦ୍ର ବ୍ୟକ୍ତିମାନଙ୍କ ସଙ୍ଗେ କଥୋପକଥନ ଓ ସେମାନଙ୍କ ଅଭ୍ୟର୍ଥନା ଏବଂ ରାଜଦରବାର କରାଯାଉଥିଲା। ବର୍ତ୍ତମାନ ରାଜେନ୍ଦ୍ରଲାଲଙ୍କ ଅନୁମାନ ଅନୁସାରେ ଗୃହଗୁଡ଼ିକ ଧାଡ଼ି ଧାଡ଼ି ହୋଇ ନିର୍ମିତ ହୋଇଥିଲେ, ରାଜା ମୁକୁନ୍ଦଦେବ ଦକ୍ଷିଣ ବା ଉତ୍ତର ଶାହାଲରେ ଶୟନ କରୁଥିଲେ; କାରଣ ଆବୁଲ ଫଜଲଙ୍କ ବର୍ଣ୍ଣନାନୁସାରେ ରାଜା ନବମ ତଳରେ ଶୟନ କରୁଥିଲେ। ରାଜେନ୍ଦ୍ରଲାଲଙ୍କ ଅନୁମାନ ଅନୁସାରେ ରାଜା ଗୋଟିଏ ପ୍ରାନ୍ତ ଶାହାଲରେ ଏବଂ ସମ୍ବାଦବାହକ, ଦ୍ୱାରରକ୍ଷକ ପ୍ରଭୃତି ଗୋଟିଏ ଗୋଟିଏ ଭିତର ଶାହାଲରେ ଶୟନ କରୁଥିଲେ। ଏହା କପରି ସମ୍ଭବପର ହୋଇପାରେ ? ଆମ୍ଭେମାନେ ଜାଣୁ ରାଜାମାନେ ପୂର୍ବେ ନିଜନିଜର ନିରାପଦ ଅଧିବାସ ନିମନ୍ତେ ଅଭେଦ୍ୟ ପ୍ରାସାଦାଦି ନିର୍ମାଣ କରୁଥିଲେ ଏବଂ ଶୟନାଗାରର ଚତୁର୍ଦ୍ଦିଗରେ ପ୍ରହରୀ ନିଯୁକ୍ତ ରଖୁଥିଲେ। ଏହିପରି ସ୍ଥଳେ, ବାରବାଟୀରେ ରାଜା ମୁକୁନ୍ଦଦେବ ନିଜେ ଗୋଟିଏ ପ୍ରାନ୍ତସ୍ଥିତ ଗୃହରେ ଶୟନ କରୁଥିବା ସମ୍ଭବପର ହୋଇ ନପାରେ; ବରଂ ଆବୁଲ ଫଜଲଙ୍କ ବର୍ଣ୍ଣନାନୁସାରେ ରାଜା ସର୍ବୋଚ୍ଚ ତଳରେ ଶୟନ କରିବା ଅଧିକ ସ୍ୱାଭାବିକ।

କେହି କେହି କହିପାରନ୍ତି, ଯେତେବେଳେ ଗୃହଟି ବାରବାଟୀ ପରି ଗୋଟିଏ ଅଭେଦ୍ୟ ଦୁର୍ଗ ମଧ୍ୟରେ ଥିଲା, ରାଜା ଯେତେବେଳେ ଯେ କୌଣସି ଶାହାଲରେ ଶୟନ କଲେ ମଧ୍ୟ ଆପଦଶୂନ୍ୟ ଥିଲେ; କିନ୍ତୁ ଆମ୍ଭମାନଙ୍କର ପ୍ରଶ୍ନ ଏହି ଯେ; ଦୁର୍ଗ ଯେତେ ଅଭେଦ୍ୟ ନିରାପଦ ହେଉ ପଛକେ, ଗୃହର ଭିତର ଶାହାଲମାନ ପ୍ରାନ୍ତ ଦୁଇ ଶାହାଲଠାରୁ ଅପେକ୍ଷାକୃତ ଅଧିକ ନିରାପଦ ଥିଲା, ସନ୍ଦେହ ନାହିଁ। ଏପରି ସ୍ଥଳେ ରାଜା ପ୍ରହରୀ ଆଜ୍ଞାବାହକାଦି ଅଧସ୍ତନ କର୍ମଚାରୀମାନଙ୍କୁ ଭିତର ଶାହାଲମାନଙ୍କରେ ରଖାଇ ନିଜେ କାହିଁକି ଗୋଟିଏ ପ୍ରାନ୍ତ ଶାହାଲରେ ଶୟନ କରୁଥିଲେ ? ସେ ନିଜେ ତ ଭିତରସ୍ଥ କୌଣସି ଗୃହରେ ଅଧିକ ନିଶ୍ଚିନ୍ତରେ ଶୟନ କରୁଥାନ୍ତେ। କେଉଁ ଉଦ୍ଦେଶ୍ୟରେ ଭିତର ଗୃହମାନଙ୍କରେ ସେମାନଙ୍କୁ ରଖାଇ, ଘୋଡ଼ା, ହାତୀ, ଓଟ ପ୍ରଭୃତି ପଶୁମାନଙ୍କ ସଙ୍ଗେ ସମାନ ହୋଇ ଏକ

ପ୍ରାନ୍ତରେ ରହିବାକୁ ଶ୍ରେୟ ମଣୁଥିଲେ ? ପୁନଶ୍ଚ, ଦୁର୍ଗଟିର ଏକପ୍ରାନ୍ତରେ ଶୟନ କକ୍ଷ ନିର୍ଦ୍ଦିଷ୍ଟ କରି, ମଧ୍ୟରେ ଗୋଟିଏ ଶାହାଲ୍ଲରେ ରାଜସଭା କରାଇବା ଓ ଭଦ୍ର ବ୍ୟକ୍ତିମାନଙ୍କ ସଙ୍ଗେ ସମ୍ଭାଷଣ କରିବା ଆଦୌ ଅସମ୍ଭବ । ରାଜସଭା ନିମନ୍ତେ ପ୍ରାନ୍ତରେ କୌଣସି ଶାହାଲ୍ଲ ଅଧିକ ସ୍ୱଚ୍ଛନ୍ଦ୍ୟରେ ନିଯୋଜିତ କରି ପାରିଥାନ୍ତେ । କି ସୁବିଧା ଓ ସ୍ୱଚ୍ଛନ୍ଦ୍ୟ ନିମନ୍ତେ ରନ୍ଧନ ଶାହାଲ୍ଲର ପାଖ ଶାହାଲ୍ଲରେ ରାଜଦରବାର କରିବାର ଶ୍ରେୟ ମଣିଥିଲେ ? ବରଂ ଉପର୍ଯ୍ୟୁପରି ନିର୍ମିତ ନବତଳ ପ୍ରାସାଦରେ ଏହି ବନ୍ଦୋବସ୍ତ ବିଶେଷ ସୁବିଧା । କାରଣ ସପ୍ତମ, ଅଷ୍ଟମ ଓ ନବମ ତଳ ଆଦୌ ଉପରକୁ ରହି ସାଧାରଣଙ୍କର ଅଗମ୍ୟ ହୋଇଥିଲା । ରନ୍ଧନ ଶାହାଲ୍ଲରୁ ଧୂମାଦି ବହିଃଷ୍କରଣ କରି ତାହାର ଉପର ତଳରୁ ତଦ୍‌ଜନିତ ଅସୁବିଧା ଦୂରକରିବା ବିଶେଷ ସହଜ । ସୁତରାଂ ଆମ୍ଭମାନଙ୍କର ବିଶ୍ୱାସ ଯେ, ଆବୁଲ ଫଜଲଙ୍କ ବର୍ଣ୍ଣିତ ପ୍ରାସାଦ ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ଉପର୍ଯ୍ୟୁପରି ନବତଳ ବିଶେଷ ହୋଇ ନିର୍ମିତ ହୋଇଥିବା ସତ୍ୟ ।

ଦ୍ୱିତୀୟତଃ, ରାଜେନ୍ଦ୍ରଲାଲ ମିତ୍ର କହନ୍ତି ଯେ, ଅବୁଲ ଫଜଲ ଆଲମୀ ପ୍ରଣୀତ ଆଇନୀ ଅକବରୀରେ ରାଜା ମୁକୁନ୍ଦଦେବଙ୍କ ପ୍ରାସାଦକୁ "ଆସିଆନା" ବୋଲି କହି ଅଛନ୍ତି । ଆସିଆନା ପାରସିକ ଶବ୍ଦ ଏବଂ ଏହାର ପ୍ରକୃତ ଅର୍ଥ 'ଚଟୀ ଘର' । ଏହି ଆସିଆନାକୁ ନବତଳ ପ୍ରାସାଦ କରି ଅନୁବାଦ କରିବା ଫ୍ରାନସିସ୍ ଗ୍ଲାଡ଼ୱିନଙ୍କର ଦୋଷ (୧) ଏବଂ ତାହାଙ୍କ ଅନୁବାଦ ଉପରେ ନିର୍ଭର କରି ପରବର୍ତ୍ତୀ ଲେଖକମାନେ ଏହି ବିଷମ ଭ୍ରମରେ ପଡ଼ି ଅଛନ୍ତି; କିନ୍ତୁ ବସ୍ତୁତଃ ଏଡ଼େ ପ୍ରକାଣ୍ଡ ନବତଳ ବିଶିଷ୍ଟ ପ୍ରାସାଦ ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ ହୋଇ ନ ଥିଲା; ଏହା ଗୋଟିଏ "ଆସିଆନା" ଥିଲା । ପୂର୍ବପରି ରାଜେନ୍ଦ୍ରଲାଲ ମିତ୍ରଙ୍କର ଏହି ଯୁକ୍ତି ମଧ୍ୟ ଅସିଦ୍ଧ । କାରଣ ପ୍ରଥମତଃ, ବାରବାଟୀ ପରି ଏଡ଼େ ପ୍ରକାଣ୍ଡ ଦୁର୍ଭେଦ୍ୟ ଦୁର୍ଗ ମଧ୍ୟରେ ଉତ୍କଳର ଗଜପତି ମୁକୁନ୍ଦଦେବ କେତୋଟି ଚଟୀଘର ନିର୍ମାଣ କରାଇଥିବା ସମ୍ଭବପର ନୁହେଁ । ଆସିଆନାର ଆକ୍ଷରିକ ଅର୍ଥ 'ଚଟୀଘର', ଯାହା ପାର୍ସି ଗ୍ରନ୍ଥମାନଙ୍କରେ ମଧ୍ୟେ ମଧ୍ୟେ ଆସେ । ରାଜା ମୁକୁନ୍ଦଦେବ ବାରବାଟୀ ଦୁର୍ଗ ମଧ୍ୟରେ କି ସୁଖ ସ୍ୱଚ୍ଛନ୍ଦ୍ୟ ନିମନ୍ତେ ସାମାନ୍ୟ ଚଟୀଘର ନିର୍ମାଣ କରାଇ

---

(୧) ବଙ୍ଗୀୟ ଆସିୟାଟିକ ସୋସାଇଟି ସ୍ଥାପନର ପ୍ରଥମାବସ୍ଥାରେ (ଅର୍ଥାତ୍, ୱାରେନ ହେଷ୍ଟିଂସଙ୍କ ଶାସନକାଳରେ) ଫ୍ରାନ୍‌ସିସ ଗ୍ଲାଡ଼ୱିନ ଏହାର ଜଣେ ସଭ୍ୟ ଥିଲେ । ସେ ଭାରତର ଗଭର୍ଣ୍ଣମେଣ୍ଟଙ୍କ ତତ୍ତ୍ୱାବଧାନରେ ପ୍ରଥମେ ଆଇନୀ ଆକବରୀକୁ ଇଂରେଜୀରେ ଅନୁବାଦ କରିଥିଲେ । ବ୍ଲକ୍‌ମାନ ଓ ଜାରେଟ୍ ତାହାଙ୍କ ପରେ ପୁନରାୟ ଏହା ଅନୁବାଦ କରିଥିଲେ ।

କନ୍ଦିରେ ବାସ କରନ୍ତେ ? ଗୃହଟି ନିଶ୍ଚୟ ବାରବାଟୀ ପରି ଦୁର୍ଗ ମଧ୍ୟରେ ରହିବାର ଉପଯୁକ୍ତ ହୋଇଥିବ ।

ଦ୍ୱିତୀୟତଃ, ଆବୁଲ ଫଜଲ ନିଜେ ସ୍ୱଚକ୍ଷୁରେ ବାରବାଟୀ ଦେଖିଥିଲେ । ସେ ଭାରତର ବାଦଶାହ ଆକବରଙ୍କର ମନ୍ତ୍ରୀ ଓ ତାହାଙ୍କ ସାମ୍ରାଜ୍ୟର ପରିବ୍ରାଜକ ଥିଲେ । କେବଳ ଉତ୍କଳ କାହିଁକି, ଭାରତର ଅନ୍ୟାନ୍ୟ କେତେ ରାଜଧାନୀ ସେ ପର୍ଯ୍ୟଟନ କରିଥିଲେ । ଯଦି ବାରବାଟୀର ଅଟ୍ଟାଳିକାଟି ସାମାନ୍ୟ ଆସିଆନା ଅର୍ଥାତ୍ ଚଟିଘର ହୋଇଥାନ୍ତା, ତାହାହେଲେ ସେ କେଉଁ ଉଦ୍ଦେଶ୍ୟରେ ନିଜର ବହୁମୂଲ୍ୟ ଇତିହାସରେ ଏହାର ସବିଶେଷ ବର୍ଣ୍ଣନା ଦେଇଥାନ୍ତେ ? କାରଣ କୌଣସି ପରିବ୍ରାଜକ ଏହି ସାମାନ୍ୟ ବସ୍ତୁ ନେଇ ବର୍ଣ୍ଣନ କରିବା ସମ୍ଭବପର ନୁହେଁ । ରାଜା ମୁକୁନ୍ଦ-ଦେବଙ୍କ ପ୍ରାସାଦ ନିଶ୍ଚୟ ଏହି ପ୍ରକାଣ୍ଡ ଓ ସୁରମ୍ୟ ହୋଇଥିବାରୁ ଆବୁଲ ଫଜଲଙ୍କ ଭଳି ଇତିହାସ ଲେଖକଙ୍କର ମନୋରାଜ୍ୟରେ ଏହି ବିସ୍ମୟ ଉତ୍ପାଦନ କରି ପାରିଥିଲା ଯେ, ସେ ସ୍ୱପ୍ରଣୀତ ଆଇନୀ ଆକବରୀରୂପ ବହୁମୂଲ୍ୟ ଗ୍ରନ୍ଥରେ ଏହାର ସବିଶେଷ ବିବରଣ ଲିପିବଦ୍ଧ ନ କରି ରହିପାରି ନ ଥିଲେ ।

ତୃତୀୟତଃ, ରାଜେନ୍ଦ୍ରଲାଲ ମିତ୍ରଙ୍କ ମତାନୁସାରେ ଯଦି ରାଜା ମୁକୁନ୍ଦଦେବଙ୍କ ଅଟ୍ଟାଳିକା ନବତଳ-ବିଶିଷ୍ଟ ନ ହୋଇ, ନଅ ଶାହାଲରେ ବିଭକ୍ତ ହୋଇଥିବ, ତାହାହେଲେ ମଧ୍ୟ ସେ ଗୃହକୁ କଦାପି ପାରସୀରେ "ଆସିଆନା" ବୋଲି କୁହାଯାଇ ନ ପାରେ । କାରଣ ନଅ ଶାହାଲ ବିଶିଷ୍ଟ ଗୃହ, ପ୍ରତି ଦୁଇ ଶାହାଲ ମଧ୍ୟରେ ଗୋଟିଏ ଗୋଟିଏ ପ୍ରାଙ୍ଗଣ—ଏହିଭଳି ଗୃହ କଦାପି ସାମାନ୍ୟ ଚଟିଘର ବୋଲି ନିର୍ଣ୍ଣିତ ହୋଇ ନ ପାରେ ।

ଚତୁର୍ଥତଃ, ଉତ୍କଳର ଯେଉଁ ଯୁଗରେ ଏହି ଅଟ୍ଟାଳିକା ନିର୍ମିତ ହୋଇଥିଲା, ସେହି ଯୁଗ ପ୍ରତି ଦୃଷ୍ଟିଦେଲେ ବାରବାଟୀ ଦୁର୍ଗ ମଧ୍ୟରେ ସାମାନ୍ୟ ଗୋଟିଏ ଆସିଆନା ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବା କଦାପି ସମ୍ଭବପର ହୋଇ ନ ପାରେ । ପ୍ରତ୍ୟେକ ଗଠନ କାର୍ଯ୍ୟରେ ସେତେବେଳେ ଓଡ଼ିଆଙ୍କର ଲକ୍ଷ୍ୟ ଥିଲା, ଗଠିତ ଜିନିଷଟି କିପରି ସୁନ୍ଦର ଓ ବୃହତ୍ ହେବ । ଓଡ଼ିଶାର ପ୍ରତ୍ୟେକ ଦେବମନ୍ଦିର, ସେତୁ ପ୍ରଭୃତି ସେହି ନୀତିରେ ଗଠିତ ହୋଇଥିବାର ପ୍ରମାଣ ମିଳେ । କାର୍ଯ୍ୟଟି ବୃହତ୍, ସୁନ୍ଦର ଓ ସ୍ଥାୟୀ ହେବା ପ୍ରତ୍ୟେକ ଗଠନ କାର୍ଯ୍ୟର ନୀତି ଥିଲା । ତେଣୁ ଆଶ୍ଚର୍ଯ୍ୟ ହେବାର ଯଥାର୍ଥତଃ କହନ୍ତି, "The Indians built like Titans and finished like jewellers." ଅର୍ଥାତ୍ ଗ୍ରୀସୀୟପୁରାଣରେ ବର୍ଣ୍ଣିତ ରାକ୍ଷସପ୍ରକୃତି ଟାଇଟାନମାନେ ଈଶ୍ୱର ନିର୍ଦ୍ଦିଷ୍ଟ ପଥରେ ସ୍ୱର୍ଗକୁ ଯିବା

ହେସ୍ତିଜାନ ଜଣ ପର୍ବତ ଉପରେ ପର୍ବତ ରଖି ସ୍ୱର୍ଗଗମନ ନିମନ୍ତେ ଯେପରି ପ୍ରକାଣ୍ଡ ସ୍ତୁପ ନିର୍ମାଣ କରିଥିଲେ, ଭାରତୀୟ ଜାତି ସେହିରୂପ ପ୍ରକାଣ୍ଡ ଦେବାଳୟ ଓ ଅଟ୍ଟାଳିକାଦି ନିର୍ମାଣ କରୁଥିଲେ ଏବଂ ସ୍ୱର୍ଣ୍ଣକାର ଯେପରି ନିଜ ଅଳଙ୍କାରଟି ନାନା ତାରକସି କାମରେ ଚିତ୍ରିତ କରେ, ଭାରତୀୟ ଜାତି ଏତେ ଏଡ଼େ ସୁବୃହତ୍ ଦେବାଳୟାଦି ସେହିପରି ସୂକ୍ଷ୍ମ କାରୁକାର୍ଯ୍ୟରେ ଅଳଂକୃତ କରୁଥିଲେ । ଅଗ୍ରଗଣ୍ୟ ହେବାର ଭାରତୀୟମାନଙ୍କ ସମ୍ବନ୍ଧରେ ଯେଉଁ ମତ ଦେଇଅଛନ୍ତି, ଓଡ଼ିଆମାନଙ୍କ ପ୍ରତି ତାହାହିଁ ପ୍ରଯୁଜ୍ୟ । କାରଣ ଭାରତୀୟ ଶିଳ୍ପର ୪୦୦ ବର୍ଷରେ ଓଡ଼ିଆ ଶିଳ୍ପବିଦ୍ୟାରେ ଅତି ଉଚ୍ଚ ସ୍ଥାନ ଅଧିକାର କରିଥିଲେ ଏବଂ ଉକ୍ତ ୪୦୦ ବର୍ଷର ଉତ୍କୃଷ୍ଟ ଶିଳ୍ପ କୋଣାର୍କରେ ପ୍ରଦର୍ଶିତ । ଅର୍ଥ ପ୍ରତି ଆଦୌ ଦୃଷ୍ଟି ନ ଦେଇ, ଓଡ଼ିଆ ରାଜାମାନେ ଅକ୍ଷୟ ଯଶଃ ସ୍ଥାପନ ନିମନ୍ତେ ବିଶେଷ ତତ୍ପର ଥିଲେ । ସୁତରାଂ ସେମାନେ କୀର୍ତ୍ତିଗୁଡ଼ାକୁ ଯେତେ ବୃହତ୍ ଓ କାରୁକାର୍ଯ୍ୟରେ ଅଳଂକୃତ କରି ପାରନ୍ତି, ତାହା କରିବାରେ ଲେଶମାତ୍ର ତ୍ରୁଟି କରୁ ନ ଥିଲେ । ପୁରୀ, ଭୁବନେଶ୍ୱର ଓ କୋଣାର୍କ ମନ୍ଦିର ଏବଂ ପୁରୀର ଅଠରନଳା ଏହି ନୀତିରେ ଗଠିତ ହୋଇ ଥିବାର ଜଣାଯାଏ । ରାଜା ମୁକୁନ୍ଦଦେବଙ୍କ ପୂର୍ବପୁରୁଷମାନେ ଯେତେବେଳେ ଏଡ଼େ ଏଡ଼େ ବୃହତ୍ ଓ ସୁନ୍ଦର କାର୍ଯ୍ୟମାନ କରି ଅକ୍ଷୟ ଯଶଃ ଲାଭ କରିଥିଲେ, ସେତେବେଳେ ସେ ନିଜେ ବାରବାଟୀ ଦୁର୍ଗ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ଓ ସୁଖଚିତ ଅଟ୍ଟାଳିକା ନିର୍ମାଣ କରାଇଥିବା ବିଶେଷ ସମ୍ଭବ । ସାମାନ୍ୟ 'ଆସିଆନା' ନିର୍ମାଣ କରି ସେ କି ଯଶଃ ଲାଭ କରନ୍ତେ ? ଯହିଁରେ ଯଶଃ ନାହିଁ କି ବାସ କରିବାର ସୁଖ ସ୍ୱାଚ୍ଛନ୍ଦ୍ୟ ନାହିଁ, ଏଭଳି ଗୃହ ବାରବାଟୀ ଦୁର୍ଗ ମଧ୍ୟରେ ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ନିର୍ମିତ ହେବା କଦାପି ସ୍ୱପ୍ନରେ ସୁଦ୍ଧା ସମ୍ଭାବନା କରାଯାଇ ନ ପାରେ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ରାଜା ମୁକୁନ୍ଦଦେବଙ୍କର ଏଡ଼େ ବୃହତ୍ ପ୍ରାସାଦକୁ ଆବୁଲ ଫଜଲ "ଅସିଆନା" ବୋଲି ଲେଖିଲେ କିପରି ? ଉତ୍ତର ସ୍ଥଳରେ ଆମ୍ଭେମାନେ ଏତିକି ମାତ୍ର କହିପାରୁଁ;—ବର୍ତ୍ତମାନ ଯୁଗରେ ମଧ୍ୟ ଅନେକ କୋଟିପତି ସୁବୃହତ୍ ଓ ସୁରମ୍ୟ ପ୍ରାସାଦମାନ ନିର୍ମାଣ କରାଇ ତାହାକୁ Peace Cottage ବା ଶାନ୍ତି କୁଟୀର ପ୍ରଭୃତି ଆଖ୍ୟା ଦେଇଥାନ୍ତି । କଲିକତାର ପରେଶନାଥ ପରି ସୁନ୍ଦର ଓ ବହୁମୂଲ୍ୟ ମନ୍ଦିର ଏବଂ ତାହାର ପ୍ରାଙ୍ଗଣ, ରାୟ ବଦ୍ରୀଦାସ ବାହାଦୂରଙ୍କର "Pleasure garden" ଅର୍ଥାତ୍ ପ୍ରମୋଦୋଦ୍ୟାନ ବୋଲି କଥିତ ହୁଏ । ଏହା ବୋଲି ସେହି ପ୍ରାସାଦମାନଙ୍କୁ ଗୋଟିଏ ଗୋଟିଏ କୁଡ଼ିଆଘର ଏବଂ ପରେଶନାଥକୁ ଗୋଟିଏ ସାମାନ୍ୟ ବଗିଚା ବୋଲି ଅନୁମାନ କରିବା ନିତାନ୍ତ ଭ୍ରାନ୍ତି-ମୂଳକ । ଏହି ପ୍ରସଙ୍ଗରେ ଗୋଟିଏ ରହସ୍ୟମୟ ଆଖ୍ୟାୟିକା ସ୍ୱତଃ ମନରେ ଉଦିତ ହୁଏ । ବଙ୍ଗଦେଶୀୟ ସୌରୀନ୍ଦ୍ରନାଥ ମୁଖୋପାଧ୍ୟାୟଙ୍କ

"ଦଶଆ"ରେ (୧) ବର୍ଣ୍ଣିତ ଅଛୁ ଯେ, ସେଲିମ (୨) ଓସମାନଅଲିଙ୍କ (୩) କନ୍ୟାର (ଦଶଆ ୪) ବିବାହ ଉଦ୍ଦେଶ୍ୟରେ ଓସମାନଅଲିଙ୍କ ଗୃହାଭିମୁଖରେ ଯାତ୍ରା କରୁଥିଲେ । ପଥଭ୍ରଷ୍ଟ ହୋଇ ସେ ଦଳେ ମାତାଲଙ୍କୁ ନିଜ ଲକ୍ଷ୍ୟସ୍ଥଳକୁ ମାର୍ଗ ଜିଜ୍ଞାସା କରିବାରୁ, ସେ ଉତ୍ତର କରିଥିଲେ ଯେ, ଅମୁକ ସ୍ଥାନରେ ଯେଉଁ କୁଟୀର ଗୃହଟି ଅଛୁ ତାହା ତୁମ୍ଭ ଲକ୍ଷ୍ୟସ୍ଥଳ । ସେଲିମ ସେମାନଙ୍କ କଥାରେ ଏତେ ଭୁଲି ଯାଇଥିଲେ ଯେ, ଶ୍ୱଶୁରଙ୍କର ସୁରମ୍ୟ ପ୍ରାସାଦରେ ରହି ସୁଦ୍ଧା ତାହାଙ୍କ ସଙ୍ଗେ କଳହ କରିବାକୁ ଲଗିଲେ, କପାଇଁ ସେ ତାହାକୁ ଏକେବାରେ ସାମାନ୍ୟ କୁଟୀର ଗୃହ ମଧ୍ୟରେ ଆବଦ୍ଧ କରି ରଖିଥିଲେ । ସେ ଗୃହଟି ଗୋଟିଏ ସୁରମ୍ୟ ବୃହତ୍ ପ୍ରାସାଦ ବୋଲି ଶ୍ୱଶୁର ଯେତେ ବୁଝାଇଲେ ସୁଦ୍ଧା ସେଲିମ ସର୍ବଦା କହେ—"ଆମ୍ଭେ ତ ପଥ ମଧ୍ୟରେ ଶୁଣିଅଛୁଁ ଏହା ଗୋଟିଏ କୁଟୀର, ଏହା ସୁରମ୍ୟ ପ୍ରାସାଦ ହେଲା କପରି ?" ସେହିପରି ରାଜା ମୁକୁନ୍ଦଦେବଙ୍କ ନବତଳ ପ୍ରାସାଦକୁ ଆବୁଲ ଫଜଲ 'ଆସିଆନା' ଲେଖିଅଛନ୍ତି ବୋଲି ତାହାକୁ 'ଆସିଆନା' ବୋଲି ବୁଝିବା ଏବଂ ତାହାଙ୍କ ଲିଖିତ ପ୍ରାସାଦଟିର ବର୍ଣ୍ଣନା ପ୍ରତି ଆଦୌ ଦୃଷ୍ଟି ନ ଦେବା, ସୌରୀନ୍ଦ୍ର ବାବୁଙ୍କର ସେଲିମର କାର୍ଯ୍ୟ, କୌଣସି ଇତିହାସ ଲେଖକ ବା ପଣ୍ଡିତଙ୍କର କାର୍ଯ୍ୟ ନୁହେଁ । ମୁକୁନ୍ଦଦେବ ନବତଳ ପ୍ରାସାଦ ନିର୍ମାଣ କରାଇ ତାହାର ହୁଏତ ଏଭଳି କିଛି ନାମ ଦେଇଥିବେ, ଯାହାକୁ ଆବୁଲ ଫଜଲ ପାରସୀ ଭାଷାରେ "ଆସିଆନା" କରି ଅନୁବାଦ କରିଥିଲେ । ତାହାଙ୍କ କର୍ତ୍ତୃକ ପ୍ରାସାଦଟିର ବର୍ଣ୍ଣନାରୁ ଏହାହିଁ ପ୍ରତିପାଦିତ ହୁଏ । ଅତଏବ ଏହା ନିଶ୍ଚୟ ଯେ, ରାଜେନ୍ଦ୍ରଲାଲ ମିତ୍ର ବିଶେଷ ଭ୍ରମରେ ପଡ଼ିଅଛନ୍ତି । ନିଜ ଅନୁମାନର ଅସିଦ୍ଧତା ଅନୁଭବ କରି ସେ ପରଶେଷରେ ମଧ୍ୟ ସନ୍ଦେହ ହୋଇଅଛନ୍ତି । ସୁତରାଂ ଆମ୍ଭମାନଙ୍କର ବିଶ୍ୱାସ ଯେ ରାଜା ମୁକୁନ୍ଦଦେବ ଏହି ବାରବାଟୀ ଦୁର୍ଗ ମଧ୍ୟରେ ନବତଳବିଶିଷ୍ଟ ଗୋଟିଏ ପ୍ରକାଣ୍ଡ ଓ ସୁରମ୍ୟ ପ୍ରାସାଦ ନିର୍ମାଣ କରାଇଥିଲେ ।

ଫରଗୁସନ ଆବୁଲ ଫଜଲଙ୍କ ଏହି 'ଆସିଆନା'ରେ ସାମାନ୍ୟ ବିଚଳିତ ହୋଇଥିଲେ ଏବଂ ପରିଶେଷରେ ସ୍ୱପ୍ରଣୀତ "Indian and Eastern Architecture" ନାମକ ପୁସ୍ତକରେ ଲେଖିଅଛନ୍ତି—"As Orissa, at

---

(୧) "ଦଶଆ" ଇଂଲଣ୍ଡ କବି Goldsmith ଙ୍କର 'She stops to Conquer" ନାମକ ଅପେରାର ବଙ୍ଗଳା ଅନୁବାଦ ।

(୨) ସେଲିମ, Goldsmith ଙ୍କର Mr. Marlow.

(୩) ଓସମାନ୍‌ଅଲି, Mr Hardcastle.

(୪) ଦଶଆ, Miss. Hardcastle.

the period when this was written, was practically a part of Akbar's Kingdom. There seems little doubt that this description was furnished by some one who knew the place There are seven storied palaces at Joypur and Bijapur still standing and which were created about this date and one of five stories in Akbar's own palace at Futtepore Sikri, but none so far as I know of nine stories, though I see no reason for doubting the correctness of the description of the one just quoted."—(ଅର୍ଥାତ୍, ଆବୁଲ ଫଜଲ ଯେତେବେଳେ ଏହି ପ୍ରାସାଦ ବର୍ଣ୍ଣନା କରିଥିଲେ ସେତେବେଳେ ଓଡ଼ିଶା ଆକବରଙ୍କ ସାମ୍ରାଜ୍ୟର ଅଂଶ-ବିଶେଷ କହିଲେ ଚଳେ । ତେଣୁ ଏହାର ବର୍ଣ୍ଣନାକାରୀ (ଆବୁଲ ଫଜଲ) ସ୍ୱୟଂ ଓଡ଼ିଶା ସହିତ ସୁପରିଚିତ ଥିବେ । ଅଦ୍ୟାପି ସପ୍ତତଳ ପ୍ରାସାଦମାନ ଜୟପୁର ଓ ବିଜାପୁରରେ ବର୍ତ୍ତମାନ ଅଛି ଏବଂ ସେହି ପ୍ରାସାଦମାନ ଏହି (ମୁକୁନ୍ଦଦେବଙ୍କ) ପ୍ରାସାଦ ନିର୍ମାଣ କାଳରେ ଗଠିତ ହୋଇଥିଲା । ଫତେପୁର ସିକ୍ରୀଠାରେ ଆକବରଙ୍କର ନିଜର ଗୋଟିଏ ପଞ୍ଚତଳ ପ୍ରାସାଦ ଅଛି; କିନ୍ତୁ ନବତଳ ପ୍ରାସାଦ ଅନ୍ୟ କୌଣସି ସ୍ଥାନରେ ଥିବାର ମୁଁ ଶୁଣିନାହିଁ । ତଥାପି, ବର୍ତ୍ତମାନ ଯେ ବର୍ଣ୍ଣନା ଉଦ୍ଧୃତ ହେଲା (ତାହାଙ୍କ ନିଜ ଗ୍ରନ୍ଥରେ ରାଜା ମୁକୁନ୍ଦଦେବଙ୍କ ନବତଳ ପ୍ରାସାଦର ବର୍ଣ୍ଣନା) ତହିଁରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଫର୍ଗୁସନ କହନ୍ତି ଯେ, ଅନ୍ୟତ୍ର ନବତଳ ପ୍ରାସାଦ ଥିବାର ସେ ଶୁଣି ନାହାନ୍ତି; ତେଣୁ ଆମ୍ଭେମାନେ ବିଶ୍ୱାସ କରୁଁ ଯେ, ଆବୁଲ ଫଜଲ ଆକବରଙ୍କ ସାମ୍ରାଜ୍ୟ ଭ୍ରମଣ କରୁ କରୁ ଓଡ଼ିଶାରେ ପ୍ରବେଶମାତ୍ରେ ଏହି ନବତଳ ସୁରମ୍ୟ ପ୍ରାସାଦ ତାହାଙ୍କ ମନୋରାଜ୍ୟରେ ଏକ ଅଭିନବ ଭାବ ଜାଗ୍ରତ କଲା ଏବଂ ସେ ଏହି ପ୍ରାସାଦର ସବିଶେଷ ବର୍ଣ୍ଣନା ନକରି ରହିପାରି ନଥିଲେ । ଷ୍ଟର୍ଲିଙ୍ଗ୍ ଓଡ଼ିଶାରେ ବହୁକାଳ ବାସ କରିଥିଲେ ଏବଂ ବାରବାଟୀ ଦୁର୍ଗ ସେ ବିଶେଷ ତତ୍ତ୍ୱାନୁସନ୍ଧିତ୍ସୁ ଚକ୍ଷୁରେ ଦର୍ଶନ କରିଥିଲେ । ଓଡ଼ିଶା ସମ୍ବନ୍ଧରେ ସେ ଯେଉଁ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି, ତହିଁରେ ସେ କହନ୍ତି - "No traces of the famous palace of Raja Mukund Deo, nine stories in height, mentioned in the Aini Akbari, are to be found within the walls of the fort; but the fragments of sculptured cornices, etc., which have been dug up at different times and more specially, a massive candelbra or pillar, furnished with branches for

holding lights, formed of the fine indurated chlorite or pot-stone, are probably the remains of some large ard splendid edifice."– ଅର୍ଥାତ୍ ଆଇନ ଆକବରୀରେ ବର୍ଣ୍ଣିତ ରାଜା ମୁକୁନ୍ଦ ଦେବଙ୍କ ନବତଲ ପ୍ରାସାଦର କୌଣସି ଚିହ୍ନ ବର୍ତ୍ତମାନ ଦୁର୍ଗର ପ୍ରାଚୀର ମଧ୍ୟରେ ଦେଖାଯାଏ ନାହିଁ; କିନ୍ତୁ ନାନା କାରୁକାର୍ଯ୍ୟ ଖଚିତ କର୍ଣ୍ଣିସ୍ ପ୍ରଭୃତିର ଯେଉଁ ଭଗ୍ନାବଶେଷ ସମୟ ସମୟରେ ଖୋଳା ହୋଇ ବାହାରୁ ଅଛି ଏବଂ ବହୁକାଳ ସ୍ଥାୟୀ ସୁନ୍ଦର କ୍ଲୋରାଇଟ୍ ପ୍ରସ୍ତର ନିର୍ମିତ ଆଲୋକ ଧାରଣ ନିମନ୍ତେ ନାନା ଶାଖା ଯୁକ୍ତ ଯେଉଁ ପ୍ରକାଣ୍ଡ ସ୍ତମ୍ଭ ବିଦ୍ୟମାନ ଅଛି, ତହିଁରୁ ଅନୁମାନ କରାଯାଏ ଯେ, ସମ୍ଭବତଃ ସେହି ସମସ୍ତ କୌଣସି ବୃହତ୍ ଓ ସୁରମ୍ୟ ଅଟ୍ଟାଳିକାର ଭଗ୍ନାବଶେଷ ମାତ୍ର । ଆବୁଲ ଫଜଲଙ୍କ ପ୍ରତ୍ୟକ୍ଷ ଏବଂ ଫର୍ଗୁସନ୍ ଓ ଷ୍ଟର୍ଲିଙ୍ଗ୍ଙ୍କ ଅନୁମାନ ଉପରେ ନିର୍ଭର କରି ଆମ୍ଭେମାନେ ବିଶ୍ୱାସ କରୁଁ ଯେ, ରାଜେନ୍ଦ୍ରଲାଲ ମିତ୍ରଙ୍କ ସନ୍ଦେହ ନିତାନ୍ତ ଅଯୌକ୍ତିକ ଏବଂ ଉତ୍କଳର ଗଜପତି ରାଜା ମୁକୁନ୍ଦଦେବ ବାରବାଟୀ ଦୁର୍ଗ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ଓ ସୁରମ୍ୟ ନବତଲ ବିଶିଷ୍ଟ ପ୍ରାସାଦ ନିର୍ମାଣ କରାଇଥିବା ସମ୍ପୂର୍ଣ୍ଣ ସମ୍ଭବପର ।

"ଛିଦ୍ରେଷ୍ୱନର୍ଥା ବହୁଲୀଭବନ୍ତି" । ଉତ୍କଳ ସମ୍ବନ୍ଧରେ ଏହି ଉକ୍ତିର ଯାଥାର୍ଥ୍ୟ ଯଥେଷ୍ଟ ପ୍ରମାଣିତ । ଉତ୍କଳର ବର୍ଣ୍ଣନା କରିବା ପାଇଁ ଲେଖକ ବଡ଼ ଅଳ୍ପ ହୋଇ ନାହାନ୍ତି । ସେମାନେ ନାନା ମତ ବାହାର କରି ଉତ୍କଳର ପ୍ରକୃତ ଇତିହାସକୁ ଏହିରୂପ ସତ୍ୟର ଦୂରବର୍ତ୍ତୀ କରିଅଛନ୍ତି ଯେ, ତହିଁରୁ ପ୍ରକୃତ ତଥ୍ୟ ବାହାର କରିବା ଅନେକ ସମୟରେ ବଡ଼ କଠିନ ହୋଇ ପଡ଼ିଅଛି । କାହାର ବିସ୍ମୃତିର ଦୋଷ, କାହାର ଚକ୍ଷୁର ଦୋଷ, ଏ ସମସ୍ତ ଆମ୍ଭମାନଙ୍କୁ ସହ୍ୟ କରିବାକୁ ହୋଇ ଅଛି । ବଙ୍ଗଭାଷାର ଲେଖକ ଓ କଲିକତା ହାଇକୋର୍ଟର ଭୂତପୂର୍ବ ବିଚାରପତି ଶ୍ରୀଯୁକ୍ତ ସାରଦାଚରଣ ମିତ୍ର ସ୍ୱପ୍ରଣୀତ "ଉତ୍କଳେ ଶ୍ରୀକୃଷ୍ଣଚୈତନ୍ୟ" ନାମକ ପୁସ୍ତକରେ ଲେଖି ଅଛନ୍ତି—"ଆଇନ ଆକବରୀତେ ଲିଖିତ ଆଛେ ଯେ, ଦୁର୍ଗେର ଭିତରେ ରାଜା ମୁକୁନ୍ଦଦେବେର ଅତି ସୁନ୍ଦର ଦ୍ୱିତଲ ପ୍ରାସାଦ ଆଛେ ।" (୪୧, ପୃ) । ଶ୍ରୀ ସାରଦାଚରଣ ମିତ୍ରଙ୍କର ଏହି ଉକ୍ତି ପଠନ ଦ୍ୱାରା "The Dictionary of Phrase and Fables"ରେ ବ୍ରୁଅରଙ୍କ ଜଗନ୍ନାଥ ବର୍ଣ୍ଣନ ଅସ୍ମମାନଙ୍କ ସ୍ମୃତି ରାଜ୍ୟରେ ସ୍ୱତଃ ଉଦିତ ହୁଏ । ବ୍ରୁଅର କହନ୍ତି—"King Aeen Akbery sent a learned Brahman to look out a site for a temple. ********* The idol Jagannath is in shape like a serpent, with seven heads and on each cheek it hath the form of a wing, and the

wing open and shut and flap as it is carried in a stately chariot, etc." ଅର୍ଥାତ୍, ରାଜା ଆଇନ୍ ଆକବର୍ ଗୋଟିଏ ମନ୍ଦିର ନିର୍ମାଣ ନିମନ୍ତେ ଉପଯୁକ୍ତ ସ୍ଥାନ ଅନୁସନ୍ଧାନ କରିବା ପାଇଁ ଜଣେ ପଣ୍ଡିତ ବ୍ରାହ୍ମଣଙ୍କୁ ପ୍ରେରଣ କରିଥିଲେ । ⁂⁂⁂⁂⁂ ଜଗନ୍ନାଥ ପ୍ରତିମୂର୍ତ୍ତି ଆକାରରେ ଗୋଟିଏ ସପ୍ତଫେଣୀ ସର୍ପଦନ୍ତ ୧୦ ପ୍ରତ୍ୟେକ ଗାଲରେ ଦେଖା ଅଛି । ଯେତେବେଳେ ଏହା ଗୋଟିଏ ସୁସଜ୍ଜିତ ରଥରେ ବୁହା ହୁଅନ୍ତି, ସେତେବେଳେ ସେହି ଡେଣାଗୁଡ଼ିକ ମେଲା ହୁଏ ଓ ବନ୍ଦ ହୁଏ ଏବଂ ଫଡ୍ ଫଡ୍ ହୁଏ । ଶ୍ରୀ ସାରଦାଚରଣ ମିତ୍ରଙ୍କ ଉକ୍ତ ଉପରୋକ୍ତ ବର୍ଣ୍ଣନା ପରି ହାସ୍ୟଜନକ । ଆଇନ୍ ଆକବରୀର ଦୁହାଇ ଦେଇ ଏହିରୂପ ମିଥ୍ୟାଜନକ ଓ ଭ୍ରମାତ୍ମକ ଉକ୍ତି କରିବା ଜଣେ ଖ୍ୟାତନାମା ଲେଖକଙ୍କ ପକ୍ଷରେ କେତେଦୂର ଯୁକ୍ତିଯୁକ୍ତ ତାହା ପାଠକମାନେ ବିଚାର କରନ୍ତୁ ।

ଏହିପରି ନାନା ଲେଖକଙ୍କ ନାନା ବଂଶଗତ ମତ କେବଳ ବାରବାଟୀ ଦୁର୍ଗ କାହିଁକି ଓଡ଼ିଶାର ଐତିହାସିକ ବିଷୟର ପ୍ରକୃତ ତଥ୍ୟ ଏପରି ଆବୃତ କରି ରଖିଅଛି ଯେ, ଅନେକ ସମୟରେ ସତ୍ୟ ପାଇବା ନିମନ୍ତେ ଚେଷ୍ଟା କରୁ କରୁ କୁହୁଡ଼ିରେ ପଡ଼ିଗଲା ପରି ହେବାକୁ ହୁଏ । ଓଡ଼ିଶା ସମ୍ବନ୍ଧରେ ଲେଖକ ଅତି ଅଳ୍ପ ସଂଖ୍ୟକ ନୁହନ୍ତି । ଯେ ଅବେ ଓଡ଼ିଶା ଦେଖିଗଲେ, ସେ ଗୁଣପଦ ଲେଖିବାକୁ ଅଗ୍ରସର ହୋଇଅଛନ୍ତି । ସେ ସମସ୍ତ ମତ ସମାଲୋଚନା କରିବା ନିମନ୍ତେ ପ୍ରଲୋଭନ ହେଲେ ମଧ୍ୟ ଅନେକ ସମୟରେ ନିରର୍ଥକ ଓ ଶ୍ରମର ଅପଚୟ ବୋଲି ପ୍ରତୀତ ହୁଏ । ଅତଏବ ଆମ୍ଭେମାନେ ଏହି ବାରବାଟୀ ଦୁର୍ଗ ସମ୍ବନ୍ଧରେ ଯେତେ ଯେତେ ବିଭିନ୍ନ ମତ ଅଛି ତାହା ସମସ୍ତ ଆଲୋଚନା କରି କେବଳ ଉପରଲିଖିତ ଦୁଇ ଖ୍ୟାତନାମା ଲେଖକଙ୍କର ଭ୍ରମାତ୍ମକ ପ୍ରଳାପ ଯଥାକଥିତ ସଂଶୋଧନ କରିବାରେ ଚେଷ୍ଟା କରିଅଛୁଁ ।

———

## ପଞ୍ଚମ ଅଧ୍ୟାୟ

(ବାରବାଟୀ ଦୁର୍ଗ ବର୍ଣ୍ଣନା)

ସୁଦୂର ଦଶମ ଶତାବ୍ଦୀରେ ରଚିତ ବାରବାଟୀ ଦୁର୍ଗର ଅବସ୍ଥା ସେତେବେଳେ କିପରି ଥିଲା, ତାହା ବର୍ଣ୍ଣନା କରିବା ସହଜ ସାଧ୍ୟ ନୁହେଁ । ବହୁଃଶତ୍ରୁର ବହୁବାର ଆକ୍ରମଣରେ ବାରବାଟୀ ଆଜି ଦର୍ଶକ ଚକ୍ଷୁରୁ ଲୁପ୍ତପ୍ରାୟ ହୋଇଅଛି । ଦୁର୍ଗର

ବର୍ତ୍ତମାନ ଅବସ୍ଥାରେ ଯାହା କିଛି ଐତିହାସିକ କୌତୁହଳସମ୍ପାଦକ ଭଗ୍ନାବଶେଷ ଅଛି ତହିଁରୁ ଗଜପତିଙ୍କ ନିର୍ମିତ ବାରବାଟୀ ଦୁର୍ଗ ବର୍ଣ୍ଣନା କରିବା ସାଧ୍ୟାତୀତ କହିଲେ ଚଳେ । ବର୍ତ୍ତମାନ କେବଳ ଦୁର୍ଗର ଚତୁଃପାର୍ଶ୍ୱସ୍ଥ ପରିଖା, ପୂର୍ବପାର୍ଶ୍ୱରେ ଦ୍ୱାରଦେଶ, ଗୋଟିଏ ପୁଷ୍କରିଣୀ, ଏକ ମହମ୍ମଦୀୟ ଗୃହ ଏବଂ ଗୋଟିଏ ବୃହତ୍ ସ୍ତୂପ ବ୍ୟତୀତ ଅଧିକ କିଛି ଦର୍ଶକମାନଙ୍କର ଦୃଷ୍ଟିଗୋଚର ହୁଏ ନାହିଁ । ଅନଙ୍ଗଭୀମଦେବଙ୍କ ସମୟରେ ତାହାର ଆକାର କିପରି ଥିଲା ଏବଂ ପରେ କେଉଁ କେଉଁ ରାଜାମାନେ ତାହାର କି କି ପରିବର୍ତ୍ତନ କରିଥିଲେ, ତାହାର ସବିଶେଷ ବର୍ଣ୍ଣନା ବର୍ତ୍ତମାନ ନେତ୍ରପଥରୁ ଅନ୍ତର୍ହିତ, କେବଳ ଭଗ୍ନାବଶେଷରୁ ନିରୂପିତ ଅନୁମାନ ରାଜ୍ୟରେ ପ୍ରତିବସିତ । ଷ୍ଟର୍ଲିଙ୍ଗ ନିମ୍ନଲିଖିତ ମର୍ମରେ ଏହି ଦୁର୍ଗର ବର୍ଣ୍ଣନା କରନ୍ତି—

"ବାରବାଟୀ ଦୁର୍ଗର ଦୁଇଟି ପ୍ରସ୍ତର ପ୍ରାଚୀର ଥିଲା—ଗୋଟିଏ ବାହାରରେ, ଅର୍ଥାତ୍ ବର୍ତ୍ତମାନ ପରିଖାର ଉପରେ ଏବଂ ଅନ୍ୟଟି ଭିତରେ । ଭିତର ପ୍ରାଚୀରର ଦୈର୍ଘ୍ୟ ୨୧୫୦ ଫୁଟ ଏବଂ ପ୍ରସ୍ଥ ୧୮୦୦ ଫୁଟ ଥିଲା । ଏହିରୂପେ ଭିତର ପ୍ରାଚୀର ମଧ୍ୟସ୍ଥ କ୍ଷେତ୍ରଟି ଆୟତାକାର ଥିଲା । ବାହାର ପ୍ରାଚୀରର ପୂର୍ବଦିଗରେ ଗୋଟିଏ ପ୍ରକାଣ୍ଡ ଦ୍ୱାରଦେଶ । ଏହି ଦ୍ୱାରଦେଶ ଅହମ୍ମଦଶାହଙ୍କ ରାଜତ୍ୱକାଳରେ ୧୭୫୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ଏହି ଦ୍ୱାରଦେଶର ଦୁଇ ପାର୍ଶ୍ୱରେ ଦୁଇଟି ଅତି ଉଚ୍ଚ ବର୍ଗକ୍ଷେତ୍ରାକାର ଅଟ୍ଟାଳିକା ଥିଲା । ଭୂମିରୁ ଅଗ୍ରଭାଗ ପର୍ଯ୍ୟନ୍ତ ଏହି ଅଟ୍ଟାଳିକାର ପାର୍ଶ୍ୱ ଭିତରଆଡ଼କୁ ଅବନତ ଥିଲା । ବାହାର ପ୍ରାଚୀରର ଚତୁଃପାର୍ଶ୍ୱରେ ଗୋଟିଏ ସୁବୃହତ୍ ପରିଖା ଅଛି । ଏହି ପରିଖା ପ୍ରସ୍ଥରେ ୨୨୦ ଫୁଟ ପର୍ଯ୍ୟନ୍ତ ଥିଲା । ଦୁର୍ଗର ମଧ୍ୟଭାଗରେ ଗୋଟିଏ ଅତ୍ୟୁଚ୍ଚ ପ୍ରକାଣ୍ଡ ସ୍ତୂପ ଥିଲା ଏବଂ ସେହି ସ୍ତୂପ ଉପରେ ଗୋଟାଏ ପତାକା ସ୍ତମ୍ଭ ଥିଲା । ଆଇନ ଆକବରୀରେ ବର୍ଣ୍ଣିତ ଅଛି ଯେ, ରାଜା ମୁକୁନ୍ଦଦେବ ଏହି ଦୁର୍ଗ ମଧ୍ୟରେ ଗୋଟିଏ ନବତଳ ବିଶିଷ୍ଟ ସୁରମ୍ୟ ପ୍ରାସାଦ ନିର୍ମାଣ କରାଇଥିଲେ । ସେ ପ୍ରାସାଦର କୌଣସି ଚିହ୍ନ ବର୍ତ୍ତମାନ ନାହିଁ; କିନ୍ତୁ କାରୁଖଚିତ କର୍ତ୍ତିତ ପ୍ରସ୍ତରର ଯେ ଭଗ୍ନାବଶେଷ ସମସ୍ତ ସମୟରେ ଖୋଳା ହୋଇ ବାହାରୁଅଛି ଏବଂ ବହୁକାଳ ସ୍ଥାୟୀ ସୁନ୍ଦର କ୍ଲୋରାଇଟ୍ ପ୍ରସ୍ତର ନିର୍ମିତ ଆଲେକ ଧାରଣ ନିମନ୍ତେ ନାନା ଶାଖାଯୁକ୍ତ ଯେଉଁ ପ୍ରକାଣ୍ଡ ସ୍ତମ୍ଭ ଅଛି, ତହିଁରୁ ଅନୁମାନ କରାଯାଏ ଯେ, ବୋଧହୁଏ ସେ ସବୁ କୌଣସି ବୃହତ୍ ଓ ସୁଦକ୍ଷିତ ଅଟ୍ଟାଳିକାର ଭଗ୍ନାବଶେଷ ମାତ୍ର । ମୁସଲମାନ ବା ମରହଟ୍ଟା ଶାସନକର୍ତ୍ତାମାନେ ଦୁର୍ଗର ଉତ୍ତର ପଶ୍ଚିମ କୋଣରେ ଗୋଟିଏ ଗୋଲକାର ତୋପ ସଜ୍ଜିତ ପ୍ରାକାର ନିର୍ମାଣ କରିଥିଲେ । ଗୋଟିଏ ପାରସୀ ଅନୁଶାସନ ପତ୍ରରୁ ଜଣାଯାଏ ଯେ, ଏହି ପ୍ରାକାର, ପୂର୍ବ ଦ୍ୱାରଦେଶ ଏବଂ ଅନ୍ୟାନ୍ୟ କେତେକ ପରିବର୍ତ୍ତନ ଅହମ୍ମଦଶାହଙ୍କ ରାଜତ୍ୱର ୪ର୍ଥ ବର୍ଷରେ ଅର୍ଥାତ୍ ୧୭୫୦ ଖ୍ରୀଷ୍ଟାବ୍ଦରେ ହୋଇଥିଲା ।"

ଷ୍ଟର୍ଲିଙ୍ଗ ଏହିରୂପେ ଦୁର୍ଗର ବର୍ଣ୍ଣନା କରନ୍ତି । ତାହାଙ୍କ ସମୟକୁ ଦୁର୍ଗର ଭଗ୍ନାବଶେଷ ମାତ୍ର ଥିଲା । ବର୍ତ୍ତମାନ ଅବଶ୍ୟ ତାହାଙ୍କ ସମୟ ଅପେକ୍ଷା ବହୁତ ଅନ୍ତର୍ହିତ ହୋଇଗଲାଣି । ସେ ଯେଉଁ ଦୁଇଟି ପ୍ରସ୍ତର ପ୍ରାଚୀରର ବର୍ଣ୍ଣନା କରନ୍ତି, ତାହା ବର୍ତ୍ତମାନ ଦେଖାଯାଏ ନାହିଁ, ଦୁର୍ଗର ଚତୁର୍ଦ୍ଦିଗସ୍ଥ ପରିଖା ବର୍ତ୍ତମାନ ୧୧୦ ଫୁଟ ପ୍ରସ୍ଥ ପରି ଦେଖାଯାଏ ନାହିଁ, କମ୍ବା ରାଜା ମୁକୁନ୍ଦଦେବଙ୍କ ପ୍ରାସାଦର ଯେଉଁ ଭଗ୍ନାବଶେଷ ସେ ଦେଖିବାକୁ ପାଇଥିଲେ, ତାହା ଆମ୍ଭମାନଙ୍କର ନେତ୍ରପଥରୁ ଏକାବେଳେକେ ଅନ୍ତର୍ହିତ । ହଣ୍ଟର ୧୮୭୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଆସି ଏହି ଦୁର୍ଗ ଦେଖିଲେ । ସେ ମଧ୍ୟ କହନ୍ତି ଯେ, ଷ୍ଟର୍ଲିଙ୍ଗଙ୍କ ବର୍ଣ୍ଣନାରୁ ଅତି ଅଳ୍ପ ମାତ୍ର ଦୁର୍ଗର ବର୍ତ୍ତମାନ ଅବସ୍ଥାରେ ଦୃଷ୍ଟିଗୋଚର ହୁଏ ।

ଦୁର୍ଗ ମଧ୍ୟରେ ଯେଉଁ ପୁଷ୍କରଣୀର ଅସ୍ତିତ୍ୱ ବର୍ତ୍ତମାନ ଦେଖାଯାଏ, ତାହା ରାଜମହିଳାମାନଙ୍କ ସ୍ନାନ ନିମନ୍ତେ ନିର୍ଦ୍ଦିଷ୍ଟ ଥିବାର ଅନୁମିତ ହୁଏ । ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ, ବର୍ତ୍ତମାନ ସତ୍ୟବାଦୀରେ ସ୍ଥାପିତ ସାକ୍ଷୀଗୋପାଳ ଏହି ବାରବାଟୀ ଦୁର୍ଗ ମଧ୍ୟରେ ପ୍ରଥମତଃ ରକ୍ଷାହୋଇଥିଲେ । ଶ୍ରୀଯୁକ୍ତ ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ ସ୍ୱପ୍ରଣୀତ "ଭାରତ ଭ୍ରମଣ" ନାମକ ନବ ପ୍ରକାଶିତ ପୁସ୍ତକରେ କହନ୍ତି ଯେ, କଟକଚଣ୍ଡୀ ଏହି ବାରବାଟୀ ଦୁର୍ଗ ମଧ୍ୟରେ ଥିଲେ । ଅନୁମାନ କରାଯାଏ, ଚଣ୍ଡୀ ଗଜପତିଙ୍କ ସମୟରେ ଏହି ଦୁର୍ଗ ମଧ୍ୟରେ ସ୍ଥାପିତ ଥିଲେ; କିନ୍ତୁ ଦୁର୍ଗ ମୁସଲମାନମାନଙ୍କର ହସ୍ତଗତ ହେବା ଦିନଠାରୁ ଚଣ୍ଡୀ ଓ ସାକ୍ଷୀ-ଗୋପାଳ ସ୍ଥାନାନ୍ତରିତ ହୋଇ ଅଛନ୍ତି । ଆଇନୀ ଆକବରୀରେ ବର୍ଣ୍ଣିତ ଅଛି ଯେ, ମୁକୁନ୍ଦଦେବଙ୍କର ନବତଳ ପ୍ରାସାଦର ଦକ୍ଷିଣ ଦିଗରେ ଗୋଟିଏ ହିନ୍ଦୁ ମନ୍ଦିର ଥିଲା । ଏହି ମନ୍ଦିର ମଧ୍ୟରେ ସମ୍ଭବତଃ ଚଣ୍ଡୀ ସ୍ଥାପିତ ଥିଲେ ଏବଂ ପରେ ସାକ୍ଷୀଗୋପାଳ କାଞ୍ଚିରୁ ଆନୀତ ହୋଇ ଏଥି ମଧ୍ୟରେ ଥିଲେ ।

— ❋ —

## ଷଷ୍ଠ ଅଧ୍ୟାୟ

### (ବାରବାଟୀ ଦୁର୍ଗ ଓ ତଦାନୀନ୍ତନ ଓଡ଼ିଶା)

ବାରବାଟୀ ଦୁର୍ଗ ଯେତେବେଳେ ଉନ୍ନତିର ଚରମ ସୀମାରେ ପ୍ରବେଶ କରିଥିଲା, ଯେତେବେଳେ ଏହା ଓଡ଼ିଆ ଗଜପତିଙ୍କ କୋଳରେ ଧାରଣ କରି ତିର ଶାରଦ ଚନ୍ଦ୍ରମାର ରଜତାଚ୍ଛାଦିତ ତରଙ୍ଗୋପୂର୍ଣ୍ଣ ଜଳରେ ସଗର୍ବରେ ସମ୍ମୁଖ

ନିରୀକ୍ଷଣ କରୁଥିଲା, ସେତେବେଳେ ଉତ୍କଳ ବର୍ତ୍ତମାନ ଉତ୍କଳରୂପ ନିର୍ଜୀବ, ମ୍ରିୟମାଣ କୁକ୍ଷିମ୍ଭରି ନ ଥିଲା । ସେତେବେଳେ ଉତ୍କଳର ପ୍ରତ୍ୟେକ ଗ୍ରାମ, ନଗର, ପର୍ବତ, ପ୍ରାନ୍ତର ଓ ଅରଣ୍ୟ ରଣୋନ୍ମତ୍ତ ସୈନ୍ୟ ଓ ସୁଦୃଢ଼ ଦୁର୍ଗଦ୍ୱାରା ପରିପୂର୍ଣ୍ଣ ଥିଲା । ଗଜପତି ଯେପରି ନବକୋଟି କର୍ଣ୍ଣାଟ ଉତ୍କଳର ରାଜା ଥିଲେ, ବାରବାଟୀ ସେହିପରି ଅସଂଖ୍ୟ ଦୁର୍ଗ ଉପରେ ରାଜତ୍ୱ କରୁଥିଲା । ଏହି ପ୍ରତ୍ୟେକ ଦୁର୍ଗର ପ୍ରାଙ୍ଗଣ ମଧ୍ୟରୁ ଯେଉଁ ସ୍ୱାଧୀନତା ଶକ୍ତି ବହିର୍ଗତ ହେଉଥିଲା, ତାହା ଓଡ଼ିଆଙ୍କର ପ୍ରତ୍ୟେକ ଶିରା ପ୍ରଶିରା ଭେଦକରି ଦେହରେ ତେଜ ଓ ବାହୁରେ ଅମିତ ବଳ ଆନୟନ କରୁଥିଲା । କେବଳ ଓଡ଼ିଶା କାହିଁକି, ଗଙ୍ଗାଠାରୁ କୁମାରିକା ପର୍ଯ୍ୟନ୍ତ ସମୁଦାୟ ଭୂଖଣ୍ଡ ଯୁଦ୍ଧପ୍ରିୟ ଓଡ଼ିଆ ବୀରମାନଙ୍କର କ୍ରୀଡ଼ାସ୍ଥଳୀ ଥିଲା ଏବଂ ସମସ୍ତ ଭାରତବର୍ଷ ଓଡ଼ିଆଙ୍କ ତେଜ ଅନୁଭବ କରୁଥିଲା । ଆବୁଲ ଫଜଲ ଯେତେବେଳେ (ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ପ୍ରାନ୍ତଭାଗ) ଓଡ଼ିଶା ଭ୍ରମଣ କରିଥିଲେ, ସେତେବେଳେ ଓଡ଼ିଶା ଦୁର୍ଗାରଣ୍ୟ ଥିଲା । ଓଡ଼ିଶାର ପ୍ରତ୍ୟେକ 'ମାହାଲ'ରେ ସୁଶିକ୍ଷିତ ସୈନ୍ୟ ଏକ ବା ତତୋଽଧିକ ଦୁର୍ଗରେ ବାସ କରୁଥିଲେ । ଆଇନୀ ଆକବରୀରୁ ଜଣାଯାଏ ଯେ, ଓଡ଼ିଶା ସେତେବେଳେ (ଅର୍ଥାତ୍ ଆବୁଲ ଫଜଲଙ୍କ ଭ୍ରମଣ ସମୟରେ) ପାଞ୍ଚଟି ସରକାରରେ ବିଭକ୍ତ ଥିଲା । ଯଥା—ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ । ପ୍ରତ୍ୟେକ ସରକାର ଅଧୀନରେ କେତେଗୁଡ଼ିଏ 'ମାହାଲ' ଥିଲା । ଏହି ପ୍ରତ୍ୟେକ ମାହାଲ ଗଜପତିଙ୍କ ଆଦେଶାନୁସାରେ ସୈନ୍ୟ ପ୍ରେରଣ କରୁଥିଲେ । ଆବୁଲ ଫଜଲ ନିମ୍ନଲିଖିତରୂପେ ଓଡ଼ିଶାର କେତେକ ଦୁର୍ଗର ଉଲ୍ଲେଖ କରିଅଛନ୍ତି :—

୧ । ଜଳେଶ୍ୱର ସରକାର—

ବାଜସାହ - (ସାଧାରଣତଃ ହାସପୁର ନାମରେ କଥିତ) ପାଞ୍ଚଟି ଦୁର୍ଭେଦ୍ୟ ଦୁର୍ଗ ।

ବାଲକସି—ତିନଗୋଟି ଦୁର୍ଗ ।

ପର୍ବଦା—ତିନୋଟି ଅଭେଦ୍ୟ ଦୁର୍ଗ । ଏହା ପର୍ବତ ଓ ଜଙ୍ଗଲ ମଧ୍ୟରେ ସ୍ଥାପିତ ।

ଖେଗରାଇ—ଗୋଟିଏ ଶକ୍ତ, ଅଭେଦ୍ୟ ଦୁର୍ଗ ।

ବଡ଼େଙ୍ଗୀ—ଗୋଟିଏ ସୁଦୃଢ଼ ଦୁର୍ଗ ।

ଜଳେଶ୍ୱର ନଗର—ଗୋଟିଏ ସୁଦୃଢ଼ ଇଟାଦୁର୍ଗ ।

ତମ୍ଲୁକ (ବୋଧହୁଏ ତମଲୁକ)—ଗୋଟିଏ ପ୍ରସ୍ତରନିର୍ମିତ ସୁଦୃଢ଼ ଦୁର୍ଗ ।

ଡାରକୋଲ—ଜଙ୍ଗଲ ମଧ୍ୟରେ ଗୋଟିଏ ଦୁର୍ଗ ।

ରମ୍‌ଣା ( ବୋଧହୁଏ ବର୍ତ୍ତମାନ ରେମୁଣା )—ପାଞ୍ଚଟି ଦୁର୍ଗ ।

ରଇନ (ଓଡ଼ିଶା ସୀମାରେ)—ତିନୋଟି ଦୁର୍ଗ ।

ରସୁଲପୁର ( ଗୋଟିଏ ବଡ଼ ନଗର )—ଗୋଟିଏ ବୃହତ୍ ଦୁର୍ଭେଦ୍ୟ ଦୁର୍ଗ ।

ସବଙ୍ଗ – ଜଙ୍ଗଲ ମଧ୍ୟରେ ଗୋଟିଏ ଅଭେଦ୍ୟ ଦୁର୍ଗ ।

କୁରୁଗପୁର ( ବା ଖରକପୁର )—ପର୍ବତଶ୍ରେଣୀ ଉପରେ ଅବସ୍ଥିତ ଏକ ଦୁର୍ଭେଦ୍ୟ ଦୁର୍ଗ ।

କେଦାରଖଣ୍ଡ—ତିନୋଟି ଅଭେଦ୍ୟ ଦୁର୍ଗ ।

ମେଦନୀପୁର (ବୃହତ୍ ନଗର)—ଦୁଇଗୋଟି ଦୁର୍ଗ, ଗୋଟିଏ ନୂତନ ଓ ଅପରଟି ପୁରାତନ ।

କୁରୁବପୁର—ଗୋଟିଏ ଖୁବ୍ ଶକ୍ତ ଦୁର୍ଗ ।

ନାରାୟଣପୁର—ପର୍ବତ ଉପରେ ଅବସ୍ଥିତ ଏକ ଅଭେଦ୍ୟ ଦୁର୍ଗ । ଏହି ସରକାରର ୩୫୭୦ ଅଶ୍ୱାରୋହୀ, ୨ ହସ୍ତୀସେନା ଏବଂ ୪୩୮୧୦ ପଦାତିକ ଗଜପତିଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ ।

୨ । ଭଦ୍ରଖ ସରକାର ।

ବରଓ୍ୱା—ଦୁଇଗୋଟି ଅଭେଦ୍ୟ ଦୁର୍ଗ ।

ଭଦ୍ରଖ—ଧମନଗର ନାମରେ ଗୋଟିଏ ସୁଦୃଢ଼ ଦୁର୍ଗ ।

ସହେନ୍ସ—ଦୁଇଟି ଦୁର୍ଭେଦ୍ୟ ଦୁର୍ଗ ।

କାଇମାନ ( ଗିମାନ )—ଗୋଟିଏ ଅତ୍ୟନ୍ତ ଶକ୍ତ ଦୁର୍ଗ । ଶ୍ରେଷ୍ଠ ତାଲୁକଦାରମାନଙ୍କରେ ତିନୋଟି ଦୁର୍ଗ ।

ଏହି ସରକାରର ୭୫୦ ଅଶ୍ୱାରୋହୀ ଏବଂ ୭୩୦୦ ପଦାତିକ ଗଜପତିଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ ।

୩ । କଟକ ସରକାର ।

ଆଠଗଡ଼—ଗୋଟିଏ ଶକ୍ତ ଦୁର୍ଗ ।

ପୁର୍ବଦର ( ପୁର୍ବଦ୍ୱାର )—ସ୍ୱଶଗୋଟି ଦୁର୍ଗ ।

ବାରଙ୍ଗ—ପଟିଆ ଜଙ୍ଗଲ ଓ ପାହାଡ଼ ମଧ୍ୟରେ ୯ଟି ଦୁର୍ଗ ।

ବିଜୟନଗର (୧)—ଗୋଟିଏ ଅଭେଦ୍ୟ ଦୁର୍ଗ ।
ଚନ୍ଦ୍ରଶେଖର—ସୁନ୍ଦରଗୋଟି ଦୁର୍ଭେଦ୍ୟ ଦୁର୍ଗ ।
ହାଜିପୁର (ରାଜପୁର) – ଗୋଟିଏ ଶକ୍ତ ଦୁର୍ଗ ।
ଦକ୍ଷିଣଦ୍ୱାର (ବା ଦକ୍ଷିଣଦ୍ୱାର)—ସୁନ୍ଦରଗୋଟି ବୃହତ୍ ଦୁର୍ଗ ।
କୋଠାଦେଶ—ଛଅଗୋଟି ଦୁର୍ଗ ।
କଟକ ବନାରସ (ବର୍ତ୍ତମାନ ବରାଣାସୀ)– ଗୋଟିଏ ଅଭେଦ୍ୟ ଦୁର୍ଗ ଏବଂ ଦୁର୍ଗମଧ୍ୟରେ ଗୋଟିଏ ସୁନ୍ଦର ପ୍ରାସାଦ ।
କୋଟଗଡ଼ (ବୋଧହୁଏ ବର୍ତ୍ତମାନ କୋଟଗଡ଼ାଙ୍ଗ)—ଏକ ଶକ୍ତ ଦୁର୍ଗ ।

ଏହି ସରକାରର ୭୮୭୮ ଅଶ୍ୱାରୋହୀ ଓ ୧୭୦୧୬୦ ପଦାତିକ ଗଜପତିଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ ।

୪ । କଳିଙ୍ଗଦଣ୍ଡପାଟ ସରକାରର ୫୦୦ ଅଶ୍ୱାରୋହୀ ଓ ୩୦୦୦୦ ପଦାତିକ ଏବଂ

୫ । ରାଜମହେନ୍ଦ୍ରୀ ସରକାରର ୧୦୦୦ ଅଶ୍ୱାରୋହୀ ଓ ୫୦୦୦ ପଦାତିକ ଗଜପତିଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ । *

ଆବୁଲ ଫଜଲଙ୍କ ଗ୍ରନ୍ଥରେ ଯେଉଁ ଯେଉଁ ଦୁର୍ଗମାନଙ୍କର ନାମୋଲ୍ଲେଖ ଥିଲା, ତାହା ଆମ୍ଭେମାନେ ଉପରେ ଦେଲୁଁ । ସେ ସବୁ ମୋଟ ୭୬ ଗୋଟି ଦୁର୍ଗର ଉଲ୍ଲେଖ କରିଅଛନ୍ତି । ତାହାଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଓଡ଼ିଶାରେ ୯୯ ଗୋଟି ମାହାଲ ଥିଲା ଏବଂ ପ୍ରତି ମାହାଲର କିଛି କିଛି ସୈନ୍ୟ ଗଜପତିଙ୍କ ସୈନ୍ୟଶ୍ରେଣୀଭୁକ୍ତ ଥିଲେ । ଏହି ୯୯ ମାହାଲରୁ ସେ ୩୦ ଗୋଟି ମାହାଲରେ ଥିବା ଦୁର୍ଗର ଉଲ୍ଲେଖ କରିଅଛନ୍ତି । ଆଇନୀ ଆକବରୀରେ ଅନ୍ୟତ୍ର ସେ କହନ୍ତି ଯେ, "ଏହି ସମସ୍ତରେ

---

(୧) ଏହା ଦାକ୍ଷିଣାତ୍ୟର ବିଜୟନଗର ନୁହେଁ, ସମ୍ଭବତଃ ତାହା ସେତେବେଳେ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା ।

* ଆଇନୀ ଆକବରୀର ମୂଳ ସଂସ୍କରଣ ଆମ୍ଭେମାନେ ପାଇ ନାହୁଁ, ଗ୍ଲାଡୱିନ ଏବଂ ବ୍ଲକମ୍ୟାନଙ୍କ ଇଂରେଜୀ ଅନୁବାଦରୁ ଏହା ଉଦ୍ଧାର କଲୁଁ । କୌଣସି ସ୍ଥାନର ନାମ ଇଂରେଜୀରୁ ଗୃହୀତ ହୋଇଥିବାରୁ ସମ୍ପୂର୍ଣ୍ଣ ଶୁଦ୍ଧ କି ନୁହେଁ ସନ୍ଦେହ । ତେଣୁ ପ୍ରାର୍ଥନା କରୁଁ ପାଠକମାନେ ସତର୍କରେ ଏହା ପାଠ କରିବେ । ଏହି ତାଲିକା ଉଦ୍ଧାର କରିବାର ଉଦ୍ଦେଶ୍ୟ ଏହି ଯେ, ପାଠକମାନେ ସମସ୍ତ ସୁବିଧାନୁସାରେ ନିଜ ନିଜ ବାସସ୍ଥାନର ନିକଟବର୍ତ୍ତୀ ଦୁର୍ଗର ଭଗ୍ନାବଶେଷମାନ ଅନୁସନ୍ଧିତ୍ସୁ ଚକ୍ଷୁରେ ଦୃଷ୍ଟି କରି ତାହାର ସବିଶେଷ ଇତିହାସ ପ୍ରକାଶ କରିବେ ଏବଂ ଏହି ତାଲିକା ମଧ୍ୟରେ ନାହିଁ ଏଭଳି ଅନେକ ଦୁର୍ଗ ପୂର୍ବେ ଥିଲା । ତେଣୁ ପ୍ରାର୍ଥନା ଯେ, ପାଠକମାନେ କେବଳ ଏହି ତାଲିକା ଦ୍ୱାରା ସୀମାବଦ୍ଧ ହେବେ ନାହିଁ ।

ଓଡ଼ିଶାରେ ୧୨୯ ଗୋଟି ଦୁର୍ଗ ଗଜପତିଙ୍କ ଅଧୀନରେ ଥିଲା ।" ସୁତରାଂ ୫୭ ଗୋଟି ଦୁର୍ଗ କେଉଁଠାରେ କିପରି ଭାବରେ ଥିଲା, ତାହାର କୌଣସି ଚିହ୍ନ ଆଇନୀ ଆକବରୀରୁ ମିଳେ ନାହିଁ । ଆବୁଲ ଫଜଲ ଚିଲିକା ପାର ହୋଇ ଦକ୍ଷିଣକୁ ଯାଇଥିବାର ପରିଚୟ ମିଳେ ନାହିଁ । କାରଣ, କଳିଙ୍ଗଦଣ୍ଡପାଟ ଓ ରାଜମହେନ୍ଦ୍ରୀର ମାହାଲମାନଙ୍କର ନାମୋଲ୍ଲେଖ ନାହିଁ ଏବଂ ତତ୍ରତ୍ୟ ଦୁର୍ଗମାନଙ୍କ ସମ୍ବନ୍ଧରେ ମଧ୍ୟ କିଛି କହି ନାହାନ୍ତି । ପ୍ରତି ମାହାଲର ସୈନ୍ୟ ଯଦିଚ ଗଜପତିଙ୍କ ସୈନ୍ୟ ଶ୍ରେଣୀଭୁକ୍ତ ଥିଲେ, ତଥାପି ସେ ସବୁ ମାହାଲରେ ଦୁର୍ଗ ଥିବାର ଲେଖି ନାହାନ୍ତି । ଆବୁଲ ଫଜଲଙ୍କ ଦୁର୍ଗ ତାଲିକାରେ ଆଳି, ରୈବ୍ରାର, ବାରବାଟୀ; ଯାଜପୁର ପ୍ରଭୃତି ଦୁର୍ଗମାନଙ୍କର ନାମ ନାହିଁ । ଆଳି ଦୁର୍ଗ ମୁସଲମାନମାନଙ୍କ ଶାସନ କାଳରେ ଅର୍ଥାତ୍ ଆବୁଲ ଫଜଲଙ୍କ ଓଡ଼ିଶା ପରିଦର୍ଶନ ପରେ ବିଦ୍ୟମାନ ଥିବାର ପୂର୍ବରେ କୁହାଯାଇଅଛି । ରୈବ୍ରାର ପ୍ରତାପରୁଦ୍ରଦେବଙ୍କ ସମୟରେ (ଅର୍ଥାତ୍ ଷୋଡ଼ଶ ଶତାବ୍ଦୀରେ) ବଡ଼ ପ୍ରସିଦ୍ଧ ଦୁର୍ଗ ଥିଲା । ପୂର୍ବେ ଶ୍ରୀ ଚୈତନ୍ୟ ଚରିତାମୃତ ଉଦ୍ଧାର କରି ଏହାର ସବିଶେଷ ବୃତ୍ତାନ୍ତ ଦେଇଅଛୁଁ । ବାରବାଟୀ ଦୁର୍ଗ ସେ ସବୁ ବିଶେଷ ଭାବରେ ବର୍ଣ୍ଣନା କରିଅଛନ୍ତି । ଯାଜପୁର ଦୁର୍ଗ ନିକଟରେ ରାଜା ମୁକୁନ୍ଦଦେବ କଳାପାହାଡ଼ ସହିତ ଯୁଦ୍ଧ କରି ନିହତ ହୋଇଥିବାର ପୂର୍ବରେ କୁହା ହୋଇଛି । ଏହା ବ୍ୟତୀତ ଅନ୍ୟ କେତେ ଦୁର୍ଗ ଥିଲା, ତାହା ସବୁ ବିସ୍ମୃତି ଗର୍ଭରେ ଏକାବେଳକେ ଲୀନ ହୋଇ ଗଲାଣି । ବର୍ତ୍ତମାନ ନିର୍ଜୀବ ପରପଦଲେହନକାରୀ ଓଡ଼ିଆମାନଙ୍କୁ ଦେଖି କିଏ ବିଶ୍ୱାସ କରିବ ଯେ, ୩୦୦ ବର୍ଷ ପୂର୍ବେ ଉତ୍କଳ ଏତେ ସମୃଦ୍ଧ ଥିଲା ଏବଂ ସେମାନଙ୍କର ପୂର୍ବପୁରୁଷମାନଙ୍କ ସଙ୍ଗେ ଦିଲ୍ଲୀର ପ୍ରବଳ-ପ୍ରତାପ ବାଦଶାହ ଆକବର ମିତ୍ରତା ସ୍ଥାପନ କରିବାକୁ ବାଧ୍ୟ ହୋଇଥିଲେ ।

ଆବୁଲ ଫଜଲ୍ ସମ୍ରାଟ ଆକବରଙ୍କର ପ୍ରତ୍ୟେକ ସୁବାର ବିବରଣ ଦେଇଅଛନ୍ତି । ଆକବରଙ୍କ ୧୫ ସୁବା ମଧ୍ୟରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ସୁବା ନଥିଲା । ଏହା ବଙ୍ଗ ସୁବାର ଅନ୍ତର୍ଭୁକ୍ତ ଥିଲା । ତାହାଙ୍କ ବର୍ଣ୍ଣନାରେ ଓଡ଼ିଶା ପକ୍ଷରେ ଗୋଟିଏ ବିଶେଷତ୍ୱ ଏହି ଯେ, ଓଡ଼ିଶାର ପ୍ରତ୍ୟେକ ସରକାରର ପ୍ରତି ମାହାଲରେ ଯେତେ ଯେତେ ଦୁର୍ଗ ଥିଲା ଏବଂ ଯେତେ ଯେତେ ସୈନ୍ୟ ଥିଲେ, ତାହାର ସବିଶେଷ ବର୍ଣ୍ଣନା ଦେଇଅଛନ୍ତି । କିନ୍ତୁ ଅନ୍ୟ କୌଣସି ସୁବା ସମ୍ବନ୍ଧରେ ସେ ଏହିରୂପ ଉଲ୍ଲେଖ କରି ନାହାନ୍ତି । ଅନ୍ୟ ସ୍ଥାନମାନଙ୍କରୁ କେତେ କେତେ ରାଜସ୍ୱ ଆଦାୟ ହେଉଥିଲା, କେବଳ ଏହାହିଁ ତାହାଙ୍କ ବର୍ଣ୍ଣନାରୁ ଜଣାଯାଏ । ବଙ୍ଗ ଦେଶର କେବଳ ଗୋଟିଏ ମାହାଲରେ ଇଟା ଦୁର୍ଗ ଥିବାର ସେ ଲେଖିଅଛନ୍ତି । ଯେତେବେଳେ ବଙ୍ଗ ଦେଶର ପ୍ରତି ମାହାଲରେ ହାରାହାରି ୪୯୦ ସୈନ୍ୟ ଥିଲେ; କିନ୍ତୁ ଓଡ଼ିଶାର ପ୍ରତ୍ୟେକ ମାହାଲରେ ୨୭୦୯ ସୈନ୍ୟ ଥିଲେ, ଅର୍ଥାତ୍ ଓଡ଼ିଶାର

ପ୍ରତ୍ୟେକ ମାହାଲରେ ବଙ୍ଗଦେଶର ପ୍ରତ୍ୟେକ ମାହାଲ ଅପେକ୍ଷା ୫୦ ଗୁଣ ସୈନ୍ୟ ଅଧିକ ଥିଲେ । ଆବୁଲ ଫଜଲଙ୍କ ବର୍ଣ୍ଣନାରେ ଅନ୍ୟାନ୍ୟ ପ୍ରଦେଶ ମଧ୍ୟ ଓଡ଼ିଶା ପରି ଯୁଦ୍ଧ ଶିକ୍ଷା ନିମନ୍ତେ ବା ଦୁର୍ଗ ରକ୍ଷଣ ନିମନ୍ତେ ଏତେ ବିଖ୍ୟାତ ନଥିଲା । ଆକବରଙ୍କ ରାଜତ୍ୱର ଇତିହାସ ପାଠକମାନେ ଜାଣନ୍ତି ଯେ, ବଙ୍ଗଦେଶ ଜୟ କରିବା ନିମନ୍ତେ ଆକବର କେତେ ସୈନ୍ୟ, ସମୟ ଓ ସମ୍ପତ୍ତି ବ୍ୟୟ କରିଥିଲେ । ବଙ୍ଗଦେଶରେ ଏହା ଅନୁଭବ କଲା ପରେ ସେ କିପରି ସ୍ୱାଧୀନ ଉତ୍କଳଭୂମି ଉପରେ ହସ୍ତକ୍ଷେପ କରନ୍ତେ ? ତେଣୁ ସେ ସ୍ୱୀୟ ଅଲୌକିକ ରାଜନୈତିକ ବୁଦ୍ଧି ଦ୍ୱାରା ପ୍ରଣୋଦିତ ହୋଇ ଉତ୍କଳ ଗଜପତିଙ୍କ ସଙ୍ଗେ ସଖ୍ୟଭାବ ସ୍ଥାପନ କରିବାକୁ ବାଧ୍ୟ ହୋଇଥିଲେ । ଆବୁଲ ଫଜଲ ଯେ ଅନ୍ୟ କୌଣସି ପ୍ରଦେଶର ଦୁର୍ଗ ଓ ସୈନ୍ୟମାନଙ୍କ ସମ୍ବନ୍ଧରେ କିଛି ନ କହି ଓଡ଼ିଶାର ପ୍ରତି ମାହାଲର ଦୁର୍ଗ ଓ ସୈନ୍ୟମାନଙ୍କର ହିସାବ ଦେଇଅଛନ୍ତି, ତାହାର କାରଣ ଏହି :—ସେ ଆକବରଙ୍କ ବିସ୍ତୃତ ସାମ୍ରାଜ୍ୟର ପ୍ରତ୍ୟେକ ସୁବାରେ ଭ୍ରମଣ କରୁ କରୁ ଯେତେବେଳେ ଓଡ଼ିଶାରେ ଉପସ୍ଥିତ ହେଲେ, ସେତେବେଳେ ଓଡ଼ିଶାର ଦୃଶ୍ୟ ତାହାଙ୍କର ମନର ଭାବ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରିଦେଲା, ସେତେବେଳେ ଓଡ଼ିଶାରେ ଏକ ଅଭିନବ ଦୃଶ୍ୟ ତାହାଙ୍କ ହୃଦୟରେ ବିସ୍ମୟ ଉତ୍ପାଦନ କରିଦେଲା । ଓଡ଼ିଶାର ପ୍ରତ୍ୟେକ ଗ୍ରାମ, ନଗର, ପ୍ରାନ୍ତର, ପର୍ବତ ଓ ଅରଣ୍ୟରେ ସୁଦୃଢ଼ ଦୁର୍ଗ ରକ୍ଷଣ ଓ ଯୁଦ୍ଧ ବିଦ୍ୟା ଶିକ୍ଷା ଦେଖି ସେ ବିମୋହିତ ହୋଇଥିଲେ । ତେଣୁ ସ୍ୱୀୟ ଗ୍ରନ୍ଥରେ ଏହାର ସବିଶେଷ ବିବରଣ ନ ଦେଇ ସେ ରହିପାରି ନଥିଲେ ।

ଆବୁଲ ଫଜଲଙ୍କ ବର୍ଣ୍ଣନାରୁ ଅନ୍ୟ ଗୋଟିଏ ଗଭୀର ରାଜନୀତିପୂର୍ଣ୍ଣ ନୂତନ ତତ୍ତ୍ୱ ଦେଖାଯାଏ । ଜାତିତତ୍ତ୍ୱର ଅନୁସାରେ କ୍ଷତ୍ରିୟ ଓ ଖଣ୍ଡାୟତ ପ୍ରଭୃତି ଯୁଦ୍ଧ କରିବା ନିମନ୍ତେ ନିର୍ଦ୍ଦିଷ୍ଟ ଥିଲେ । ବ୍ରାହ୍ମଣମାନେ କେବଳ ଆଧ୍ୟାତ୍ମିକ ବିଷୟରେ ନିଯୁକ୍ତ ରହୁଥିଲେ । ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏହି ନିୟମ ଠିକ୍ ପ୍ରଚଳିତ ଥିଲା । କିନ୍ତୁ ଆବୁଲ ଫଜଲଙ୍କ ବର୍ଣ୍ଣନାନୁସାରେ ଓଡ଼ିଶା ତହିଁରୁ ପୃଥକ୍ ଥିଲା । ଗଜପତିଙ୍କ ସମୟର ଓଡ଼ିଶା ଆଲୋଚନା କଲେ ଇଂରେଜ ଇତିହାସରେ ଏଲିଜାବେଥଙ୍କ ଯୁଗ ସ୍ୱତଃ ମନରେ ଉଦିତ ହୁଏ । ଇଂଲଣ୍ଡ ଯେତେବେଳେ ଧର୍ମ ଓ ରାଜନୀତି ସେନ ଅନ୍ତର୍ବିବାଦରେ ଛିନ୍ନଭିନ୍ନ ହୋଇଥିଲା । କିନ୍ତୁ ଯେତେବେଳେ ସ୍ପାନିଆର୍ଡ଼ମାନଙ୍କର ଦୁର୍ଦ୍ଦମ୍ୟ ନୌସୈନ୍ୟ (Invincible Armada) ଇଂଲଣ୍ଡକୁ ଗ୍ରାସିଯିବା ନିମନ୍ତେ ଇଂଲଣ୍ଡ ପ୍ରଣାଳୀରେ ଉପସ୍ଥିତ ହେଲା, ସେତେବେଳେ ଇଂରେଜମାନେ ପରସ୍ପରର ଜାତିଭେଦ, ମତଭେଦ ଓ ଧର୍ମଭେଦ ଭୁଲିଯାଇ ଦେଶ ତଥା ଜାତୀୟ ଗୌରବ ରକ୍ଷା ନିମନ୍ତେ ଏକତ୍ର ହୋଇ ପ୍ରାଣ ପର୍ଯ୍ୟନ୍ତ ସମର୍ପଣ କରିଥିଲେ । ଗଜପତିଙ୍କ ସମୟରେ ଓଡ଼ିଶାରେ ତାହାହିଁ ହୋଇଥିଲା ।

ଆବୁଲ ଫଜଲଙ୍କ ବର୍ଣ୍ଣନାରୁ ଜଣାଯାଏ, ବାବନଭୂମି (ମେଦନୀପୁରର ବ୍ରାହ୍ମଣପୁର), ଆଠଗଡ଼, ହାଜିପୁର, ଶେରଗଡ଼ ଓ ବଡ଼ାନାସୀ ପ୍ରଭୃତି ସ୍ଥାନରେ ବ୍ରାହ୍ମଣମାନେ ସୈନ୍ୟଶ୍ରେଣୀଭୁକ୍ତ ହେଉଥିଲେ । ବର୍ତ୍ତମାନ ଯୁଗରେ ମଧ୍ୟ ବାହିନୀପତି, ସେନାପତି ପ୍ରଭୃତି ସାମରିକ ଆଖ୍ୟାଧାରୀ ବ୍ରାହ୍ମଣମାନେ ପୁରୀର ଶାସନମାନଙ୍କରେ ଦେଖାଯାନ୍ତି । ସେମାନେ ପୁରୁଷାନୁକ୍ରମେ ଏ ଉପାଧି ଭୋଗ କରି ଆସୁଅଛନ୍ତି । ଧର୍ମଭେଦ, ଜାତିଭେଦରେ ଜଳାଞ୍ଜଳି ଦେଇ ଦେଶର ବିପଦ ସମୟରେ ଓଡ଼ିଆ ବ୍ରାହ୍ମଣମାନେ ଶତ୍ରୁ ବିରୁଦ୍ଧରେ ଯୁଦ୍ଧକ୍ଷେତ୍ରରେ ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ ଏକ ହୋଇ ଯୁଦ୍ଧ କରୁଥିଲେ । ବ୍ରାହ୍ମଣମାନେ କେବଳ ଆଧ୍ୟାତ୍ମିକ ଚିନ୍ତାରେ ନିମଗ୍ନ ରହୁ ନଥିଲେ । ଏହି ଆଧ୍ୟାତ୍ମିକ ଚିନ୍ତା ସଙ୍ଗେ ସଙ୍ଗେ ଜାତିର ତଥା ଦେଶର ସ୍ୱାଧୀନତା ଭାବ ସେମାନଙ୍କର ବଡ଼ ପ୍ରବଳ ଥିଲା । ସଂସାରର ମାୟାଜାଲରୁ ଆତ୍ମାର ସ୍ୱାଧୀନତା ଚିନ୍ତା ସଙ୍ଗେ ସଙ୍ଗେ ସେମାନେ ଏତେ ସ୍ୱାଧୀନତା ପ୍ରିୟ ହୋଇ ପଡ଼ୁଥିଲେ ଯେ, ସ୍ୱୀୟ ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିକୁ ପଦଦଳିତ କରି ଅଧୀନତା ସ୍ୱୀକାର କରିବାକୁ କୌଣସିମତେ ଶ୍ରେୟ ମନେ କରୁ ନଥିଲେ । ଯେତେବେଳେ ସେମାନେ ସ୍ୱୀୟ ପବିତ୍ର ସ୍ୱଚ୍ଛ ହୃଦୟରେ ପରାଧୀନତା କାଳିମାର ଲେଶମାତ୍ର ଚିହ୍ନ ଆଶଙ୍କା କରି ପାରୁଥିଲେ, ସେତେବେଳେ ସେମାନେ ଭଗବାନଙ୍କୁ ସମ୍ମୁଖରେ ରଖି ଶତ୍ରୁ ବିରୁଦ୍ଧରେ ଧର୍ମ ସଂଗ୍ରାମରେ ଲିପ୍ତମାନ ହେଉଥିଲେ । ଆତ୍ମାର ସଦ୍‌ଗତି ବିଧାନ ସଙ୍ଗେ ସଙ୍ଗେ ଜାତୀୟ ସଦ୍‌ଗତି ବିଧାନ ଓଡ଼ିଆ ବ୍ରାହ୍ମଣଙ୍କର ଦୈନନ୍ଦିନ ଚିନ୍ତାର ବିଷୟ ଥିଲା । ରାଜଦରବାରଠାରୁ ଆରମ୍ଭ କରି ଧର୍ମ ଜୀବନ ପର୍ଯ୍ୟନ୍ତ, ସମସ୍ତ ସାଂସାରିକ, ରାଜନୈତିକ ଓ ଆଧ୍ୟାତ୍ମିକ କାର୍ଯ୍ୟରେ ସ୍ୱାଧୀନତା ସେମାନଙ୍କ ଜୀବନର ଲକ୍ଷ୍ୟ ଥିଲା (୧) । ଇଂଲଣ୍ଡ ଇତିହାସରେ ଯାହା ପରେ ମାତ୍ର ଦେଖାଯାଇଥିଲା, ଗଜପତିଙ୍କ ଓଡ଼ିଶାରେ ତାହା ଦୈନନ୍ଦିନ କାର୍ଯ୍ୟ ଥିଲା । ଏହି ନିମନ୍ତେ

(୧) ଏହା ପୁରୀର ରାୟଣୀ ଖଣ୍ଡିଆ ଏବଂ ୧୮୧୮ ଖ୍ରୀଷ୍ଟାବ୍ଦର ଖୋର୍ଦ୍ଧା ବିଦ୍ରୋହ ସମ୍ପର୍କରେ ଜୟକୃଷ୍ଣ ରାଜଗୁରୁଙ୍କ ଜୀବନରେ ଏ ଯୁଗରେ ମଧ୍ୟ ପରିଦୃଷ୍ଟ ।

ଦିଲ୍ଲୀର ବାଦଶାହ ଆକବର ମୁକୁନ୍ଦଦେବଙ୍କ ସଙ୍ଗେ ସଖ୍ୟ ସ୍ଥାପନ ଉଦ୍ଦେଶ୍ୟରେ ଯେଉଁ ମନ୍ତ୍ରୀଙ୍କୁ (ଆକବରଙ୍କ ରାଜସ୍ୱ ସଚିବ ହାସାନ ଖାଁ) ପ୍ରେରଣ କରିଥିଲେ, ସେ ପୁରୀରେ ତିନିମାସ ପର୍ଯ୍ୟନ୍ତ ସାଡ଼ମ୍ବରରେ ଅଭ୍ୟର୍ଥିତ ହେବା ପରେ, ଯେତେବେଳେ ଆଗ୍ରାକୁ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ରାଜା ମୁକୁନ୍ଦଦେବଙ୍କର ମହାପାତ୍ର ନାମଧାରୀ ଜଣେ ଓଡ଼ିଆ ବ୍ରାହ୍ମଣ ମନ୍ତ୍ରୀ ଉକ୍ତ ହାସନ ଖାଁଙ୍କ ସମଭିବ୍ୟାହାରରେ ୧୫୬୫ ଖ୍ରୀଷ୍ଟାବ୍ଦରେ ଆଗ୍ରା ଯାତ୍ରା କରିଥିଲେ । ସେଠାରେ ସମ୍ରାଟଙ୍କ ଦରବାରରେ ବହୁ ଆଡ଼ମ୍ବରରେ ଗୃହୀତ ଓ ଅଭ୍ୟର୍ଥିତ ହୋଇଥିଲେ । (ଆକବର ନାମା)

ସାହିତ୍ୟ ଦର୍ପଣର ଗ୍ରନ୍ଥକାର "କଳିଙ୍ଗାଃ ସାହସିକାଃ" କହିବା ଦ୍ୱାରା ଓଡ଼ିଆମାନଙ୍କୁ କେବଳ ସାହସିକତାର ଅବତାର ସ୍ୱରୂପ ବର୍ଣ୍ଣନା କରିଅଛନ୍ତି । ଯୁଧିଷ୍ଠିର 'ଧର୍ମଦେବ' ନାମରେ ପରିଚିତ ହେଲା ପ୍ରାୟ ଓଡ଼ିଆମାନେ 'ସାହସିକ' ନାମରେ ଖ୍ୟାତ ଥିଲେ । ଏଥି ନିମନ୍ତେ ବଙ୍ଗଦେଶର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣ ସେନ ମୁସଲମାନ ଶତ୍ରୁ ପରାହତ ହୋଇ ଓଡ଼ିଆଙ୍କ ଆଶ୍ରୟରେ ନବଦ୍ୱୀପରେ ପୁରୀରେ ଶେଷ ଜୀବନ ଯାପନ କରି ପାରିଥିଲେ । ଏହି ହେତୁରୁ ପରନ୍ତୁ ଆଫଗାନ ନେତ୍ରେ ତ୍ରିଂଶତାଧିକ ବର୍ଷ ପର୍ଯ୍ୟନ୍ତ କେତେ ଆକ୍ରମଣ କରି, କେତେ ସୈନ୍ୟସାମନ୍ତ ଅର୍ଥ ନଷ୍ଟ କରି, ପରିଶେଷରେ ଓଡ଼ିଆଙ୍କ ହସ୍ତରେ ନତମସ୍ତକ ହୋଇଥିଲ ଏବଂ ଏହି ହେତୁରୁ ହିଁ ସୁଲେଖକ ଶ୍ରୀଯୁକ୍ତ ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ ତାହାଙ୍କ "ଭାରତ ଭ୍ରମଣ" ଗ୍ରନ୍ଥରେ ସ୍ପଷ୍ଟଭାବରେ ଲେଖିଅଛନ୍ତି—"ସେତେବେଳେ ଏମାନେ (ଓଡ଼ିଆମାନେ) ସାହସରେ ଓ ଧୀରତ୍ୱରେ, ଶୌର୍ଯ୍ୟରେ ଓ ବୀର୍ଯ୍ୟରେ, ଏପରି କି ଶିଳ୍ପନୈପୁଣ୍ୟରେ ମଧ୍ୟ ଭାରତର ଅନ୍ୟାନ୍ୟ ଦେଶର ଅଧିବାସୀଗଣଙ୍କ ଅପେକ୍ଷା ଶ୍ରେଷ୍ଠ ଥିଲେ ।" ଏଲିଜାବେଥଙ୍କ ଇଂଲଣ୍ଡ ଯେଉଁ କାର୍ଯ୍ୟ ଥରେ ମାତ୍ର କରି ଇତିହାସରେ ଧନ୍ୟ ହୋଇଅଛି, ଗଜପତିଙ୍କ ଓଡ଼ିଆ କେତେବାର ସେହି କାର୍ଯ୍ୟ ସାଧନ କରିଅଛି ! ଜର୍ମାନୀର ଦାର୍ଶନିକାଗ୍ରଗଣ୍ୟ ମହାତ୍ମା ଫିକ୍ଟେ କହି ଅଛନ୍ତି—"Liberty ! without equality there is no Liberty; all men are equal." ଅର୍ଥାତ୍, ସ୍ୱାଧୀନତା ! ସମଜ୍ଞାନ ବ୍ୟତିରେକେ ସ୍ୱାଧୀନତା ଅସମ୍ଭବ; ମାନବମାତ୍ରେହିଁ ସମାନ । ଓଡ଼ିଆ ବ୍ରାହ୍ମଣମାନେ ଏ ପରମ ସତ୍ୟରେ ଅନୁପ୍ରାଣିତ ହୋଇଥିଲେ ଏବଂ ଦେଶ ରକ୍ଷଣ ନିମନ୍ତେ ଆଚଣ୍ଡାଳ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । ପୁରୀରେ ଜଗନ୍ନାଥ ମନ୍ଦିର ସ୍ଥାପନ କରି, "ଭଗବାନଙ୍କ ନିକଟରେ ମାନବମାତ୍ରେହିଁ ସମାନ" ବୋଲି ଯେଉଁ ପରମ ସତ୍ୟ ଓଡ଼ିଆମାନେ ପ୍ରଚାର କରିଥିଲେ, ସେହି ସତ୍ୟ—ଶତ୍ରୁ କବଳରେ ଦେଶ ରକ୍ଷା କରିବା ନିମନ୍ତେ ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମପରିମାଣରେ ଦାୟୀ—ଗଜପତିମାନଙ୍କ ସମୟରେ ପୁନର୍ବାର ପ୍ରଚାରିତ ହୋଇଥିଲ । ଦେଶ ସେବା, ଭଗବାନଙ୍କ ସେବା; ଭଗବାନଙ୍କ ସେବାରେ ହୃଦୟରେ ଯେଉଁ ସାତ୍ତ୍ୱିକତା, ସ୍ୱାଧୀନତା ସଞ୍ଚାରିତ ହୁଏ; ଦେଶ ସେବା ଦ୍ୱାରା ପବିତ୍ର ହୃଦୟରେ ସେହି ଭାବ ଜାଗରିତ ହୁଏ—ଏହି ଗମ୍ଭୀର ତତ୍ତ୍ୱ ଧର୍ମପ୍ରାଣ ଧର୍ମାଧ୍ୟକ୍ଷ ଉତ୍କଳୀୟ ବ୍ରାହ୍ମଣମାନେ ବୁଝିଥିଲେ ।

—※—

# ସପ୍ତମ ଅଧ୍ୟାୟ

## [ ଅନ୍ତିମ ଦଶା ]

ଉତ୍କଳର ବିଭିନ୍ନ ସ୍ଥାନର ଦୁର୍ଗମାନଙ୍କର ଉଲ୍ଲେଖ ପରେ ଆମ୍ଭମାନଙ୍କୁ ବାରବାଟୀର ଇତିହାସ ପ୍ରତି ଦୃଷ୍ଟି ଦିଆଯାଉ । ଆମ୍ଭେମାନେ ପୂର୍ବରେ ଦେଖିଅଛୁଁ ବାରବାଟୀ ଓଡ଼ିଶା ଗଜପତିମାନଙ୍କ ପବିତ୍ର ଓ ଶାନ୍ତିଭବନରୁ ରୂପାନ୍ତରିତ ହୋଇ ଐତିହାସିକ ନିୟମାନୁସାରେ ମୁସଲମାନମାନଙ୍କ ରାଜତ୍ୱକାଳରେ କେତେ କେତେ ଅନ୍ତର୍ବିବାଦ, କେତେ କେତେ ଲୋମହର୍ଷଣ ହତ୍ୟାକାଣ୍ଡ ପରିଦର୍ଶନ କରି ଅବଶେଷରେ ଏକ କାରାଗାରରେ ପରିଣତ ହୋଇଥିଲା । ଯେଉଁରେ ଯେଉଁ ବାରବାଟୀ ଗଜପତିମାନଙ୍କ ଅଧୀନରେ ଉତ୍କଳକୁ ସୁଜଳା, ସୁଫଳା, ମଳୟଜ ଶୀତଳା, ଶସ୍ୟଶ୍ୟାମଳା (୧) ଦେଖି ଆନନ୍ଦରେ ନୃତ୍ୟ କରୁଥିଲା, ତାହା ମରହଟ୍ଟାମାନଙ୍କ ରାଜତ୍ୱ କାଳରେ ବୁଭୁକ୍ଷୁ (୨) ଓଡ଼ିଆଙ୍କ "ଦେହି ଦେହି" ଇତି ଆର୍ତ୍ତନାଦରେ ପ୍ରତିଧ୍ୱନିତ ହେଲା । ଏହିପରି ବାରବାଟୀ ଓଡ଼ିଶା ଇତିହାସରେ କେତେ କେତେ ଦୃଶ୍ୟର ମୂକ ସାକ୍ଷୀ ସ୍ୱରୂପ ଦଣ୍ଡାୟମାନ ଥିଲା । ବର୍ତ୍ତମାନ ସେ ଦୁର୍ଗ, ସେ ରଣାଙ୍ଗନ, ଓଡ଼ିଆ ବୀର ରକ୍ତପିଣ୍ଡେ ଗଠିତ ସେ ବାରବାଟୀ ଦୁର୍ଗର ଧ୍ୱଂସ କିପରି ହେଲା ? ଯେଉଁ ପୁଣ୍ୟତୋୟା ଚିତ୍ରୋତ୍ପଳା ଦେବିତ ବାରବାଟୀ ଉତ୍କଳ ଗଜପତି-ମାନଙ୍କୁ ସ୍ୱବକ୍ଷରେ ଧାରଣ କରି ଦିନେ ଗର୍ବରେ ଉନ୍ମତ୍ତ ଥିଲା; ସେହି ବାରବାଟୀ ଦୁର୍ଗ ଭଗ୍ନ ହେଲା କିପରି ? ମହାନଦୀର ଅପର ପାର୍ଶ୍ୱରେ ବାରବାଟୀ ଦୁର୍ଗର ଉତ୍ତର ପଶ୍ଚିମ ଦିଗରେ ଦଣ୍ଡାୟମାନ ହୋଇ ଏମ୍. ଲ. ମୋଟି (M. La-Motte) ଯେତେବେଳେ ଏହି ବାରବାଟୀ ଦୁର୍ଗର ପ୍ରାସାଦ, ପ୍ରାକାର ଓ ଆଲୋକ ସ୍ତମ୍ଭ ଉପରେ ଦୃଷ୍ଟି ନିକ୍ଷେପ କଲେ; ସେତେବେଳେ ଉଇଣ୍ଡସର ଦୁର୍ଗର ପଶ୍ଚିମ ପାର୍ଶ୍ୱ ହଠାତ୍ ତାହାଙ୍କ ସ୍ମୃତିରାଜ୍ୟରେ ସ୍ୱତଃ ଉଦିତ ହୋଇଥିଲା (୩) । ବର୍ତ୍ତମାନ ସେ ସୁରମ୍ୟ, ସୁଗଠିତ ଓଡ଼ିଶାର ଉଇଣ୍ଡସର ଦୁର୍ଗର ଭଗ୍ନାବଶେଷ

---

(୧) ଗଜପତିମାନଙ୍କ ଅଧୀନରେ ଓଡ଼ିଶାରେ ଚାଉଳ ବର୍ତ୍ତମାନ ଟ ୧ ରେ ୧୧ ମହଣ ଓ ପଇସାରେ ୭ ସେର ଚାଉଳ ମିଳୁଥିଲା । (ହଣ୍ଟର)

(୨) ଏହି ସମୟରେ ଓଡ଼ିଶାରେ ଯେଉଁ ଭୀଷଣ ଦୁର୍ଭିକ୍ଷମାନ ଘଟିଥିଲା, ଓଡ଼ିଶା ଇତିହାସ ପାଠକମାନେ ଜାଣନ୍ତି । ଗୋଟିଏ ଦୁର୍ଭିକ୍ଷ ସମୟରେ ବର୍ତ୍ତମାନ ଟ ୧ ରେ ୧ ସେର ସୁଦ୍ଧା ଚାଉଳ ମିଳୁ ନ ଥିଲା । (ହଣ୍ଟର)

(୩) M. La. Motte ୧୭୬୭ ଖ୍ରୀଷ୍ଟାବ୍ଦରେ ଏହି ବାରବାଟୀ ଦୁର୍ଗ ଦର୍ଶନ କରିଥିଲେ । ଲଣ୍ଡନରେ ଭାରତ ସମ୍ରାଟଙ୍କ ବାସସ୍ଥାନକୁ Windsor ଦୁର୍ଗ କହନ୍ତି ।

ସୁଦ୍ଧା ଦେଖିବାକୁ ନ ମିଳିଲା କପରି ? ମୁସଲମାନମାନଙ୍କ ରାଜତ୍ୱକାଳରେ ଏ ଦୁର୍ଗର କିଛିମାତ୍ର କ୍ଷତି ହୋଇ ନ ଥିଲା । ତାହା ହୋଇଥିଲେ, ଆବୁଲ୍ ଫଜଲ ୧୫୭୦ ଖ୍ରୀଷ୍ଟାବ୍ଦ ପରେ ଏବଂ ଏମ୍. ଲା. ମୋଟି, ୧୭୬୬ ଖ୍ରୀଷ୍ଟାବ୍ଦରେ ଏହା ଦେଖିବାକୁ ପାଇ ନ ଥାନ୍ତେ । ଆମ୍ଭେମାନେ ପୂର୍ବରୁ କହିଅଛୁଁ ଯେ, କଳାପାହାଡ଼ ଓଡ଼ିଶାର ବହୁ ହିନ୍ଦୁ ମନ୍ଦିରାଦି ନଷ୍ଟ କରିଥିଲେ ସୁଦ୍ଧା ମୁକୁନ୍ଦଦେବଙ୍କ ରାଜଧାନୀ ଦ୍ୱାରୁ ବହୁ ରତ୍ନାଦି ବଳପୂର୍ବକ ନେଇ ବାରବାଟୀ ଦୁର୍ଗ ଉପରେ ହସ୍ତକ୍ଷେପ କରି ନ ଥିଲା । ବରଂ ମୁସଲମାନମାନଙ୍କ ରାଜତ୍ୱ କାଳରେ ଏ ଦୁର୍ଗର ଆହୁରି ଉନ୍ନତି ହୋଇଥିଲା । ପୂର୍ବରେ କୁହାଯାଇଅଛି ଯେ, ୧୭୫୦ ଖ୍ରୀଷ୍ଟାବ୍ଦରେ ଅହମ୍ମଦ ଶାହଙ୍କ ରାଜତ୍ୱକାଳରେ ପୂର୍ବଦିଗ ଦ୍ୱାର ତୋରଣ, ଉତ୍ତର ପଶ୍ଚିମ ପ୍ରାକାର ପ୍ରଭୃତି ନିର୍ମିତ ହୋଇଥିଲା । ବୋଧହୁଏ ଏହି ସମୟରେ ଅଦ୍ୟାପି ବର୍ତ୍ତମାନ ମୁସଲମାନ ଉପନିବେଶ ମଧ୍ୟ ନିର୍ମିତ ହୋଇଥିଲା । ଓଡ଼ିଶା ଇତିହାସ ଲେଖକମାନେ କହନ୍ତି ଯେ, ଇଂରେଜମାନେ କଟକରେ ପ୍ରବେଶ ମାତ୍ରେ ଏହି ଦୁର୍ଗରୁ ବିଶେଷ ପ୍ରତିବନ୍ଧକ ପାଇଥିଲେ । ଅତଏବ ମରହଟ୍ଟାମାନେ ଏହି ଦୁର୍ଗ ଭଗ୍ନ ନ କରି ଏହାର ସଦ୍‌ବ୍ୟବହାର କରୁଥିଲେ । ବାରବାଟୀର ଇତିହାସ ଉପସଂହାର କରିବା ପୂର୍ବରୁ, ଏହାର ଅନ୍ତିମ ଅଧ୍ୟାୟର ବିବରଣ ଦେବା ଆବଶ୍ୟକ ।

ଓଡ଼ିଶାର ପ୍ରାୟ ସପ୍ତଶତ ବର୍ଷର ସମ୍ବଳ ବାରବାଟୀ ଦୁର୍ଗ ଭଗ୍ନ ହେଲା କପରି ? ହଣ୍ଟର ଏ ସମ୍ବନ୍ଧରେ ପ୍ରାୟ ନୀରବ । ସେ କେବଳ ଜଣେ ଇଂରେଜ ସୈନିକଙ୍କ (ଦୁର୍ଗ ଆକ୍ରମଣକାରୀମାନଙ୍କ ମଧ୍ୟରୁ ଜଣେ) ସ୍ୱବନ୍ଧୁ ପ୍ରତି ପ୍ରେରିତ ବନ୍ଧୁଙ୍କ ପତ୍ରର ମର୍ମ ମାତ୍ର ଲେଖି ଅଛନ୍ତି । ବାରବାଟୀ ଇତିହାସର ଅନ୍ତିମ ପ୍ରକରଣ ସ୍ୱରୂପ ସେ ପତ୍ରର ସାର ନିମ୍ନରେ ଉଦ୍ଧୃତ ହେଲା । ପତ୍ରପଙ୍କ୍ତିରୁ ଜଣାଯାଏ ଯେ, ଅନ୍ତତଃ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଜପତିଙ୍କ ବାରବାଟୀ ଦୁର୍ଗ ଅକ୍ଷୁର୍ଣ୍ଣ ଥିଲା । ସେହି ପଙ୍କ୍ତି ଏହି—"Six days sufficed to build our batteries and extend our approaches to the Fort. This stronghold, firmly fixed between two branches of the Mahanadi, formed the one difficult fortification in Orissa. Faced with stones, defended by eight small towers, surrounded by a high rampart and a deep moat, 20 to 30 paces broad, and in some places by a double ditch, its single weak point was the number of hollows in the neighbouring fields, which afforded good cover for the besiegers. At 10

A. M. on the 14th October, an English officer blew open one of the small gates receiving a wound the same moment in the neck, and a storming party dashed into the heart of the fortifications. A few moments ended the struggle. The colonel of the attacking party fell, with a wound in his leg; the two or three soldiers were killed; Marhattas leaped the ramparts and streamed out of the other gates; about thirty of their dead bodies "were carried out in bullock carts to the river, where they were eaten by wild beasts and the great Province of Orissa, with its 23907 square-miles and three million souls, passed under British Rule" (P 58 vol. II) – ଅର୍ଥାତ୍, ତୋପ ଫସୁର କରିବା ନିମନ୍ତେ ସୁରକ୍ଷିତ କଣ ଖେ ଦୁର୍ଗ ଆଡ଼କୁ ଅଗ୍ରସର ହେବା ପାଇଁ ଇଂରେଜମାନଙ୍କୁ ୭ ଦିନ ଲାଗିଲା । ମହାନଦୀର ଦୁଇଟି ଶାଖା ମଧ୍ୟରେ ଦୃଢ଼ରୂପେ ଅବସ୍ଥିତ ଥିବାରୁ ଏହା ଓଡ଼ିଶା ମଧ୍ୟରେ ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ଥିଲା । ପ୍ରସ୍ତର ପ୍ରାକାର ଦ୍ୱାରା ବେଷ୍ଟିତ ଆଠଟି କ୍ଷୁଦ୍ର ଅଟ୍ଟାଳିକା ଦ୍ୱାରା ସୁରକ୍ଷିତ ଏହି ଦୁର୍ଗ ଗୋଟିଏ ଉଚ୍ଚ ପ୍ରାଚୀର ଏବଂ ୨୦ରୁ ୩୦ ପାହୁଣ୍ଡ ପ୍ରସ୍ଥ ଓ ସ୍ଥାନେ ସ୍ଥାନେ ଦୁଇଟି ଗଭୀର ପରିଖା ଦ୍ୱାରା ସମାବୃତ ଥିଲା । ଏହାର ଦୁର୍ବଳତା ସ୍ୱରୂପ ନିକଟବର୍ତ୍ତୀ ପଡ଼ିଆରେ କେତେଗୁଡ଼ିଏ କେବଳ ଚହ୍ମେର ଥିଲା । ଅବରୋଧକାରୀମାନେ ଏହି ଗହ୍ୱରଗୁଡ଼ିକରେ ସୁନ୍ଦର ଆଶ୍ରୟ ପାଇଥିଲେ । ଅକ୍ଟୋବର ୧୪ ତାରିଖ ସକାଳ ୧୦ଟା ବେଳେ ଜଣେ ଇଂରେଜ ସୈନିକ ଗୁଳିଦ୍ୱାରା ଗୋଟିଏ କ୍ଷୁଦ୍ର ଦ୍ୱାର ଉଡ଼ାଇ ଦେଲେ ଏବଂ ସେହି ସମୟରେ ସେ ନିଜ ଗଳାରେ ଏକ ଆଘାତ ପାଇଥିଲେ । ଏହି ଦ୍ୱାରବାଟେ ଇଂରେଜ ସୈନ୍ୟ ଦୁର୍ଗମଧ୍ୟରେ ପ୍ରବେଶଲାଭ କଲେ ଏବଂ ଅଳ୍ପ ସମୟ ମଧ୍ୟରେ ଯୁଦ୍ଧ ବିରାମଲାଭ କଲା । ଅବରୋଧକାରୀଙ୍କର କର୍ଣ୍ଣେଲ ପାଦରେ ଆଘାତ ପାଇ ପ୍ରାଣତ୍ୟାଗ କଲେ । ମରହଟ୍ଟାମାନେ ପ୍ରାଚୀରରୁ ଲମ୍ଫ ଦେଇ, ଅନ୍ୟ ଦ୍ୱାରବାଟେ ଦୁର୍ଗରୁ ପଳାୟନ କଲେ । ମରହଟ୍ଟାମାନଙ୍କର ପ୍ରାୟ ୩୦ଟି ମୃତଦେହ ବଳଦଗାଡ଼ିରେ ଲଦା ହୋଇ ବନ୍ୟ ପଶୁ ଓ ପକ୍ଷୀମାନଙ୍କର ଆହାର ନିମନ୍ତେ ନଦୀମଧ୍ୟରେ ନିକ୍ଷିପ୍ତ ହେଲା ଏବଂ ୨୩୯୦୭ ବର୍ଗମାଇଲ କ୍ଷେତ୍ରବିଶିଷ୍ଟ ଓ ୩୦ ଲକ୍ଷ ଲୋକାଧିବାସୀ ପ୍ରସିଦ୍ଧ ଓଡ଼ିଶା ପ୍ରଦେଶ ଇଂରେଜ ରାଜତ୍ୱର ଅନ୍ତର୍ଭୁକ୍ତ ହେଲା ।

ବାରବାଟୀ ଦୁର୍ଗ ଇଂରେଜମାନଙ୍କର ଅଧିକୃତ ହେଲା; କିନ୍ତୁ ଆମ୍ଭମାନଙ୍କର ପ୍ରଶ୍ନ ଏହି ଯେ—ଏହି ଦୁର୍ଗ କିପରି ଭଗ୍ନ ହେଲା ଓ ମୁକୁନ୍ଦଦେବଙ୍କ ସୁରମ୍ୟ ନବତଳ ପ୍ରାସାଦର ଅସ୍ତିତ୍ୱ ଲୋପ ପାଇଲା କିପରି ? କାଳର କରାଳସ୍ରୋତ ଦ୍ୱାରା ଏହା କ'ଣ ଉତ୍ପାଟିତ ହୋଇଥିଲା ? ପାଠକଗଣ, ତାହା ନୁହେଁ । ଇଂରେଜମାନେ ଏହାର ଅସ୍ତିତ୍ୱ ଲୋପ କରିଅଛନ୍ତି । ଟୟନବି (Toynbee) ସ୍ୱୀୟ ଓଡ଼ିଶାରେ କହନ୍ତି ଯେ, ଉତ୍କଳର ଏ ଅଭେଦ୍ୟ ଦୁର୍ଗ ଓ ସୁରମ୍ୟ ପ୍ରାସାଦ ଇଂରେଜମାନଙ୍କ ଦ୍ୱାରା ଭଗ୍ନ ହୋଇଅଛି । ଟୟନବି ଓଡ଼ିଶାରେ କେନାଲ ରେଭିନ୍ୟୁ ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । ସେ ଇଂରେଜଶାସନାଧୀନରେ ଓଡ଼ିଶାର ଇତିହାସ ବର୍ଣ୍ଣନା କରିଅଛନ୍ତି । ସ୍ୱୀୟ ପୁସ୍ତକରେ ସେ ବିଶେଷ ଦୁଃଖସହ ଲେଖିଅଛନ୍ତି;— "The Pubic Works Department have converted this fine building into an unsightly series of earthen mounds, and the ground within the moat into a wilderness of stone-pits. The stone composing the walls of the moat which surrounds the fort are now being used to build an hospital. Some of the fortstones was, I believe, used for the lighthouse at False Point, and for other public buildings; the dust of the rest is shaken off our feet against us in the station roades. "The great arched gate way in east face" mentioned by Sterling and a fine old mosque called after Fathi Khan Raham are almost the only objects of antiquarian interest, which remain in tact. The fate of many interesting ruins in the province has unhappily been similar."— ଅର୍ଥାତ୍, ପାବ୍ଲିକ ୱାର୍କସ ବିଭାଗ ଏହି (ରାଜା ମୁକୁନ୍ଦଦେବଙ୍କ) ସୁରମ୍ୟ ପ୍ରାସାଦକୁ କଦର୍ଯ୍ୟ ମୃତ୍ତିକାଗଦାରେ ଏବଂ ପରିଖା ଅନ୍ତର୍ବର୍ତ୍ତୀ ଭୂଖଣ୍ଡକୁ ଗୋଟିଏ ପ୍ରସ୍ତର ଜଙ୍ଗଲରେ; ପରିଣତ କରିଅଛନ୍ତି । ଦୁର୍ଗ ଚତୁଃପାର୍ଶ୍ୱସ୍ଥ ପରିଖା ପ୍ରାଚୀରର ପ୍ରସ୍ତର ବର୍ତ୍ତମାନ (ଅର୍ଥାତ୍ ୧୮୭୩ ଖ୍ରୀଷ୍ଟାବ୍ଦରେ) ଗୋଟିଏ ଡାକ୍ତରଖାନା ନିର୍ମାଣରେ ବ୍ୟବହୃତ ହେଉଅଛି । ଦୁର୍ଗର କେତେକ ପ୍ରସ୍ତର ଫଲସ୍‌ପଏଣ୍ଟର ବତୀଘର ଓ ଅନ୍ୟାନ୍ୟ ସରକାରୀ ଗୃହ ନିର୍ମାଣରେ ବ୍ୟୟିତ ହେଉଅଛି । ଅବଶିଷ୍ଟ ପ୍ରସ୍ତର ଷ୍ଟେସନ ରାସ୍ତାରେ ପଡ଼ି ଆମ୍ଭମାନଙ୍କ ପାଦ ଧୂଳିଧୂସରିତ କରୁଅଛି । ଷ୍ଟର୍ଲିଙ୍ଗଙ୍କ ବର୍ଣ୍ଣିତ ପୂର୍ବଦିଗର ତୋରଣବିଶିଷ୍ଟ ଦ୍ୱାରଦେଶ ଏବଂ ଫତେଖାଁ ରହାମଙ୍କ ନାମରେ କଥିତ ଗୋଟିଏ ସୁନ୍ଦର ମନ୍ଦିର ହିଁ କେବଳ ପ୍ରତ୍ନତତ୍ତ୍ୱ-

ବଦ୍‌ମାନଙ୍କର କୌତୂହଳଜନକ ସ୍ୱରୂପ ରହିଅଛି । ଏହି ପ୍ରଦେଶର ବହୁତ ଆଶ୍ଚର୍ଯ୍ୟଜନକ ମନ୍ଦିର ଓ ପ୍ରାସାଦର ଦଶା ଦୁର୍ଭାଗ୍ୟବଶତଃ ଏହିପରି ହୋଇଅଛି ।

ଉପର ଲିଖିତ ବିଷୟନବିଙ୍କ ମନ୍ତବ୍ୟରୁ ସ୍ପଷ୍ଟ ଜଣାଯାଉଅଛି ଯେ, ବାଣକ-ମିସ୍ତ୍ରୀ ଇଞ୍ଜିନିୟର ବାରବାଟୀ ଦୁର୍ଗର ସର୍ବନାଶ ସାଧନ କରିଅଛି । କେବଳ ବାରବାଟୀ ଦୁର୍ଗ ଉପରେ ଯେ ଏପରି ଦଶା ପଡ଼ିଥିଲା ତାହା ନୁହେଁ, ଉତ୍କଳର ପବିତ୍ର ଧର୍ମକ୍ଷେତ୍ର ଯାଜପୁରର କେତେ କେତେ ସୁନ୍ଦର ଦେବମନ୍ଦିର ଏହି ଦଶା ଭୋଗ କରିଅଛି । ସୁରମ୍ୟ ମନ୍ଦିରମାନଙ୍କରୁ ପ୍ରସ୍ତର ଚୂନା ହୋଇ ନାନାସ୍ଥାନରେ ସରକାରୀ ଗୃହ ଓ ରାସ୍ତା ନିର୍ମିତ ହୋଇଅଛି । ଏଥିନିମନ୍ତେ ବାଣକମିସ୍ତ୍ରୀ ଇଞ୍ଜିନିୟର ଭବିଷ୍ୟତରେ ଇତିହାସରେ ବିଗ୍ରହଦଣ୍ଡରେ ଭାଗୀ ହେବେ । ଯେଉଁ ପ୍ରସ୍ତର ଏତେ ପବିତ୍ର ଜ୍ଞାନ କରି ଓଡ଼ିଆମାନେ ପୂଜା ପର୍ଯ୍ୟନ୍ତ କରନ୍ତେ ଏବଂ ଯାହା ଉପରେ ଓଡ଼ିଆ ଜାତୀୟ-ଜୀବନ-ପ୍ରାସାଦ ଗଠିତ ହୁଅନ୍ତା, ସେହି ପ୍ରସ୍ତର, ସେହି ଓଡ଼ିଆ ଜାତୀୟ ସମ୍ବଳ ଆଜି ଓଡ଼ିଆଙ୍କର ପାଦଦଳନ ସାମଗ୍ରୀ ହୋଇଅଛି । ଶ୍ରୀଯୁକ୍ତ ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ ପ୍ରଣୀତ 'ଭାରତ ଭ୍ରମଣ'ରେ ଯଥାର୍ଥତଃ ଲେଖି ଅଛନ୍ତି ଯେ, ଓଡ଼ିଆମାନଙ୍କର ଯେଉଁ ଭଗ୍ନ ଦେବାଳୟମାନ ଜଙ୍ଗଲରେ ଅନାଦର-ଭାବରେ ପଡ଼ିଅଛି, ସେଥିରୁ ଯଦି ଗୋଟିଏ ସାମାନ୍ୟ ଭଗ୍ନ ମନ୍ଦିର ବଙ୍ଗଦେଶରେ ଥାନ୍ତା, ତାହାହେଲେ ବଙ୍ଗଦେଶ ଆଜି ଏହିପରି ହୀନାବସ୍ଥାରେ ନ ଥାନ୍ତା, ଜାତୀୟ-ଜୀବନ ଗଠନ ନିମନ୍ତେ ଆଜି ବଙ୍ଗୀୟମାନେ ଇତସ୍ତତଃ ହେଉ ନଥାନ୍ତେ । ରାସ୍ତା ନିର୍ମାଣ କିମ୍ବା ସରକାରୀ ଗୃହ ବା ଡାକ୍ତରଖାନା ନିର୍ମାଣ ନିମନ୍ତେ ଅନ୍ୟତ୍ର ପ୍ରସ୍ତର ବହୁତ ମିଳି ପାରନ୍ତା । ଓଡ଼ିଆମାନେ ଯେଉଁ ପ୍ରକାଣ୍ଡ ସୁନ୍ଦର ମନ୍ଦିର ଦୁର୍ଗାଦି ନିର୍ମାଣ ନିମନ୍ତେ ଏଡ଼େ ଏଡ଼େ ପ୍ରସ୍ତରମାନ 'ମୁଣ୍ଡର ଝାଳ ଗୋଡ଼ରେ ମାରି' ବୋହି ଆଣିଥିଲେ ଏବଂ ଯାହା ଉତ୍କଳ ଇତିହାସର ପରମ ସମ୍ବଳ, ସେହିସବୁ ନଷ୍ଟ କରି ଡାକ୍ତରଖାନା ଓ ରାସ୍ତା ନିର୍ମାଣ କରିବା କୌଣସି ହୃଦୟବାନ୍ ମନୁଷ୍ୟର କାର୍ଯ୍ୟ ନୁହେଁ । ଓଡ଼ିଆ ଡାକ୍ତରଖାନା ବିନା ରୋଗରେ ପ୍ରାଣ ହରାଇ ପାରେ, ରାସ୍ତାବିନା ପଥକ୍ଲେଶ ସହି ପାରେ; କିନ୍ତୁ ବାରବାଟୀ ଦୁର୍ଗ ଓ ଯାଜପୁରର ମନ୍ଦିରମାନଙ୍କର ପାଶବ ଧ୍ୱଂସ କଦାପି ସହ୍ୟ କରିପାରେ ନାହିଁ । ସେଦିନ "ଉତ୍କଳ-ସାହିତ୍ୟ"ରେ (୧) ହିନ୍ଦୁର "ଦେବମନ୍ଦିର" ବିଷୟରେ ଲେଖୁ ଲେଖୁ ଲେଖକ କହିଥିଲେ "ଫଳତଃ ଭକ୍ତଲୋକର ଇଚ୍ଛା ଦେଉଳଗୁଡ଼ିକ ଭାଙ୍ଗିଯାଉ । ଅନ୍ତତଃ ଭକ୍ତଲୋକର ଇଚ୍ଛା ଏହି ମାର୍ଗରେ ଧରିବା ଉଚିତ ।" ଯାହାହେଉ, ରକ୍ଷାଅଛି, ଓଡ଼ିଶାରେ ସେଭଳି "ଭକ୍ତଲୋକ" ଅଧିକ ସଂଖ୍ୟକ ନୁହନ୍ତି କ ଲେଖକଙ୍କ ମତାନୁସାରେ କେହି କୌଣସି ଦେଉଳ ଭାଙ୍ଗି ନାହାନ୍ତି । ଲେଖକ ପୌତ୍ତଳିକ ଉପାସନା ବିରୁଦ୍ଧରେ ଖଡ୍ଗ ଧାରଣ କରି ପାରନ୍ତି; କିନ୍ତୁ

(୧) ୧୩୧୮ ସାଲ 'ବୈଶାଖ' ସଂଖ୍ୟା ୨୭ ପୃଷ୍ଠା ।

ଓଡ଼ିଆ ଜାତିର ପ୍ରାଚୀନ ଗୌରବ ଏତେ କାରୁକାର୍ଯ୍ୟ ଖଚିତ ମନ୍ଦିରମାନଙ୍କ ଧ୍ୱଂସ ପ୍ରସ୍ତାବ କରିବା ଅଶୋଭନୀୟ ଚିନ୍ତାର ପରିଚୟ ମାତ୍ର । ଉପାସନା ବିଷୟ ବାଦ ଦେଲେ ମଧ୍ୟ ଉତ୍କଳ ଇତିହାସରେ ଏହି ମନ୍ଦିରମାନଙ୍କ ମୂଲ୍ୟ ବିଶେଷ ଗୁରୁତର । ଏହି "ଦେଉଳଗୁଡ଼ିକ" ଓଡ଼ିଆ ଇତିହାସର ମୂକ ସାକ୍ଷୀ, ଓଡ଼ିଆ ଜାତୀୟଜୀବନ ଗଠନର ପ୍ରଧାନ ଉପକରଣ, ଓଡ଼ିଆଙ୍କ ପରମ ସମ୍ବଳ ଏବଂ ଓଡ଼ିଆର ଓଡ଼ିଆତ୍ୱ । "ବଙ୍କିମ୍ଙ୍କ" ଏହି ପ୍ରାଚୀନ କୀର୍ତ୍ତିଗୁଡ଼ିକ ଉଠାଇ ଦେଲେ ଓଡ଼ିଆଙ୍କର ଅସ୍ତିତ୍ୱ କେଉଁଠାରେ ଉପଲବ୍ଧି କରି ପାରିବେ ? ଶ୍ରୀ ଧରଣୀକାନ୍ତ ଲାହିଡ଼ୀ ଚୌଧୁରୀ—କେଉଁଠାରେ ଯେ ଓଡ଼ିଶା ଜଙ୍ଗଲ ମଧ୍ୟରେ ପଡ଼ିଥିବା ଗୋଟିଏ ଭଙ୍ଗା ମନ୍ଦିର ପାଇଥିଲେ ଆପଣାକୁ ଗର୍ବିତ ଓ ସମ୍ମାନିତ ମନେ କରିଥାନ୍ତେ ଏବଂ ତାହାରି ଉପରେ ବଙ୍ଗୀୟ ଜାତୀୟ-ଜୀବନ ପ୍ରାସାଦ ଗଠନ କରିଥାନ୍ତେ ଏବଂ ଆମ୍ଭର ସଂସ୍କାର-ପରାୟଣ ଲେଖକ ବା କେଉଁଠାରେ ? ଜାତୀୟ ଜୀବନ ଶୂନ୍ୟରେ ଗଠିତ ହୋଇ ପାରେ ନାହିଁ । କେବଳ ବର୍ତ୍ତମାନ ଉପରେ ଭବିଷ୍ୟତ ଜାତୀୟତା ସ୍ଥାପନ କରିବା ମୂର୍ଖତା ମାତ୍ର । ସେଥି ନିମନ୍ତେ କୌଣସି ମୂଳଭିତ୍ତିର ପ୍ରୟୋଜନ ଏବଂ ତାହା ପ୍ରାଚୀନତା ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ପ୍ରାଚୀନତ୍ୱରୁ ନୂତନତ୍ୱ ଆନୟନ କରିବା, ପ୍ରାଚୀନତ୍ୱକୁ ନୂତନତ୍ୱ ମନ୍ତ୍ରରେ ଅନୁପ୍ରାଣିତ କରିବା ପ୍ରତ୍ୟେକ ଜାତୀୟ ଜୀବନ ଗଠନକାରୀର କାର୍ଯ୍ୟ । ସ୍ୱର୍ଗୀୟ, ସ୍ୱଜାତି ଓ ଜାତୀୟତ୍ୱର ଏତେ ବଢ଼ିଲତା ସତ୍ତ୍ୱେ ସମୁଦାୟ ଇଉରୋପ ମହାଦେଶୀୟ ଏକତାର ପ୍ରଥମ ପ୍ରବର୍ତ୍ତକ, ଜ୍ଞାନବୀର, ଧର୍ମବୀର ଏବଂ କର୍ମବୀର ମହାତ୍ମା ମାଟ୍‌ସିନ ସ୍ୱଦେଶବାସୀମାନଙ୍କୁ ସମ୍ବୋଧନ କରି ଦୈବବାଣୀ ସଦୃଶ କହିଥିଲେ, "We ought to worship the greatness of our fathers; and seek in their tombs a Pledge of the future." ଏଠାରୁ ପୂର୍ବପୁରୁଷମାନଙ୍କର ମହତ୍ତ୍ୱ ଉପାସନା କରିବା ଏବଂ ସେମାନଙ୍କ କବରରୁ ଭବିଷ୍ୟତ ଜାତୀୟତାର ଇନ୍ଧନସ୍ୱରୂପ ଉପକରଣ ଅନୁସନ୍ଧାନ କରିବା ଆମ୍ଭମାନଙ୍କର ଉଚିତ । ତୁମ୍ଭମାନଙ୍କର ଉନ୍ନତ, ସୁଯୋଗ୍ୟ ପୂର୍ବପୁରୁଷମାନେ ବୃଥାରେ ଏଡ଼େ ଏଡ଼େ ମନ୍ଦିରମାନ ନିର୍ମାଣ କରି ନ ଥିଲେ; ସେମାନେ ଧନ, ମନ, ଜ୍ଞାନ, ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରି ଯାହା ତୁମ୍ଭମାନଙ୍କ ପାଇଁ ସ୍ଥିର କରି ରଖି ଯାଇଅଛନ୍ତି, ତାହା ତୁମ୍ଭମାନଙ୍କର କଳ୍ପନାର ବିଳାସକ୍ଷେତ୍ର ହେବା ପାଇଁ ନୁହେଁ, ତାହା ତୁମ୍ଭର କ୍ରୀଡ଼ା ସାମଗ୍ରୀ ହେବା ପାଇଁ ନୁହେଁ, ତାହା ତୁମ୍ଭମାନଙ୍କର ଦ୍ୱେଷ-ବହ୍ନିରେ ଭସ୍ମୀଭୂତ ହେବା ପାଇଁ ନୁହେଁ । ତୁମ୍ଭେମାନେ ଯେତେବେଳେ ବିପଦରେ ପଡ଼ିବ, ଯେତେବେଳେ ଆସ୍ୱହରା ହୋଇ ଇତସ୍ତତଃ ହେବ, ସେତେବେଳେ ତୁମ୍ଭମାନଙ୍କର ଆତ୍ମଜ୍ଞାନ ସଞ୍ଚାର ନିମନ୍ତେ ତୁମ୍ଭର ସୁଯୋଗ୍ୟ ଦୂରଦର୍ଶୀ ପୂର୍ବପୁରୁଷ-ମାନେ ଏହା ନିର୍ମାଣ କରିଅଛନ୍ତି । ସ୍ୱଦେଶପ୍ରାଣ ମହାତ୍ମା ମାଟ୍‌ସିନ ରୋମକମାନଙ୍କୁ ସେମାନଙ୍କ ପୂର୍ବପୁରୁଷମାନଙ୍କ ଅଶେଷ କୀର୍ତ୍ତିରାଜିର ବର୍ଣ୍ଣନାନ୍ତର କହିଅଛନ୍ତି—

"I remember all these things, and bow down in reverence before the image of your Past." ଅର୍ଥାତ୍ ମୁଁ ଏ ସମସ୍ତ (ପ୍ରାଚୀନ ଗୌରବର ଗୁଣାବଳୀ) ସ୍ମରଣ କରୁଅଛି ଏବଂ ତୁମ୍ଭର ପ୍ରାଚୀନତ୍ୱ ସମ୍ମୁଖରେ ଭକ୍ତିସହକାରେ ନତମସ୍ତକ ହେଉଅଛି । ଅତଏବ, ଯଦି ଓଡ଼ିଆ ଜାତିର ମଙ୍ଗଳ କାମନା କର, ଯଦି ଆପଣାର ଜାତୀୟତ୍ୱ ରକ୍ଷା କରିବାକୁ ଇଚ୍ଛା କର, ଯଦି ଭାରତୀୟ ଅନ୍ୟାନ୍ୟ ଜାତିମାନଙ୍କ ସମକ୍ଷରେ ସମକକ୍ଷ ଭାବରେ ନିଜତ୍ୱ ସ୍ଥାପନ କରିବାର ବାସନା କର, ତେବେ ଏହି ପ୍ରାଚୀନତ୍ୱ, ଓଡ଼ିଆ ଜାତିର ସମ୍ବଳ ସମ୍ମୁଖରେ ଦୃଢ଼ଭକ୍ତିରେ ନତମସ୍ତକ ହୁଅ, ଏହାରି ଉପରେ ଜାତୀୟ ଜୀବନ ଭିତ୍ତି ସ୍ଥାପନ କର, ନୂତନ ଓଡ଼ିଶାକୁ ପୁରାତନ ଓଡ଼ିଶା ଉପରେ ଦଣ୍ଡାୟମାନ କରାଅ; ତାହାହେଲେ ଧନ୍ୟ ହେବ, ପବିତ୍ର ହେବ, ଦେଶ ସେବାର ପୁଣ୍ୟ ଫଳ ପ୍ରାପ୍ତ ହେବ, ଦେଶ ତଥା ପୃଥିବୀର ଇତିହାସରେ ସ୍ୱନାମ ଅମର ଅକ୍ଷରରେ ଲିଖିତ ରହିବ ।

ବାଣିଜ୍ୟମିସ୍ତ୍ରୀ ଲୋକେ ବାରବାଟୀ ଦୁର୍ଗର ସର୍ବନାଶ ସାଧନ କରିଅଛନ୍ତି ଏବଂ ସେମାନଙ୍କ କ୍ରୂର ବ୍ୟବହାରରୁ ବର୍ଣ୍ଣିତ ପୂର୍ବଦ୍ୱାର ଦେଖନ୍ତି "ମହୁରଗଡ଼ୁ କାନ୍ତାରରେ ପଡ଼ିବା" ନ୍ୟାୟରେ ବର୍ତ୍ତମାନ କାଳର କବଳ ଗ୍ରାସରେ ନିପତିତ ହେବାକୁ ବସିଲାଣି । ଶୁପ୍ତ ଓଡ଼ିଆଙ୍କର ଚକ୍ଷୁ ଉନ୍ମୁକ୍ତ ହେଲା ନାହିଁ । ଆଜ ଯେଉଁ ବଙ୍ଗାଳୀଙ୍କ ବିରୁଦ୍ଧରେ ଓଡ଼ିଆ ନେତାମାନେ ଖଡ୍ଗହସ୍ତ ହୋଇଅଛନ୍ତି, ସେହି ବଙ୍ଗୀୟ ସ୍ୱନାମଧନ୍ୟ ପୁଣ୍ୟାତ୍ମା ଅଧ୍ୟାପକ "ଉତ୍କଳ ଶୁଣାନେ ତୁଳସୀ"ଙ୍କୁ ଆମ୍ଭମାନଙ୍କ ସମ୍ମୁଖରେ ଦେଖାଇ ଦେଲେ; ତଥାପି ଆମ୍ଭେମାନେ ଏ ପର୍ଯ୍ୟନ୍ତ ସେହି ସ୍ୱର୍ଗୀୟ ମହାତ୍ମା ଚନ୍ଦ୍ରଶେଖରଙ୍କୁ ଚିହ୍ନି ପାରିଲୁଁ ନାହିଁ । ବର୍ତ୍ତମାନ ପୁନର୍ବାର ସେହି ବଙ୍ଗାଳୀ ଆମ୍ଭମାନଙ୍କୁ କର୍ତ୍ତବ୍ୟ ଶିକ୍ଷା ଦେଉଅଛନ୍ତି । କଟକ କଲେଜର ଅଧ୍ୟାପକ ସୃହୃଦୟ ଶ୍ରୀ ହେମଚନ୍ଦ୍ର ସରକାର ଏହି ଧ୍ୱଂସୋନ୍ମୁଖ ଦୁର୍ଗଦ୍ୱାର ରକ୍ଷଣରେ ବିଶେଷ ତତ୍ପର ହୋଇଅଛନ୍ତି । ସେ ଆର୍କିଓଲଜିକାଲ ବିଭାଗର ଜନୈକ ସଭ୍ୟଙ୍କ ସାହାଯ୍ୟରେ ଏହାର ସୁରକ୍ଷଣର ପ୍ରୟାସ ପାଇ ଅଛନ୍ତି । ଏଥିନିମନ୍ତେ ସେ ଆଜ ଓଡ଼ିଆଙ୍କ ଧନ୍ୟବାଦର ପାତ୍ର ଏବଂ ଭଗବାନ କରନ୍ତୁ ତାହାଙ୍କର ଏହି ସାଧୁ ଉଦ୍ୟମ ସିଦ୍ଧ ହେଉ ।

—*—

# ଅଷ୍ଟମ ଅଧ୍ୟାୟ

## ( ଉପସଂହାର )

ପାଠକଗଣ ! ବଡ଼ ଦୁର୍ଭାଗ୍ୟବଶତଃ ଏ ପ୍ରବନ୍ଧର ଉପସଂହାର କଲୁଁ । ଯେତେବେଳେ 'ଗଜପତିଙ୍କ ଓଡ଼ିଶା' ମନରେ ପଡ଼େ, ସେତେବେଳେ "ଉତ୍କଳର କୀର୍ତ୍ତି ସ୍ତମ୍ଭ" ବାରବାଟୀର ଯୌବନ କାଳ ସ୍ମୃତି ରାଜ୍ୟରେ ପ୍ରବେଶ କରେ, ସେତେବେଳେ ଗର୍ବ ଓ ଅବସାଦ ଯୁଗପତ୍ ହୃଦୟ ଅଧିକାର କରେ । ଉତ୍କଳର ବର୍ତ୍ତମାନ ଅବସ୍ଥା ଦେଖି କିଏ ବିଶ୍ୱାସ କରିବ ଯେ, ଓଡ଼ିଶା ଏକ ସମୟରେ ଦୁର୍ଗାରଣ୍ୟ ଥିଲା, ଏକ ସମୟରେ ଓଡ଼ିଶାର ପ୍ରତ୍ୟେକ ଗୃହରେ ସୈନ୍ୟ ସାମନ୍ତ ଯୁଦ୍ଧ ଶିକ୍ଷା କରୁଥିଲେ; କିଏ ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ କରିବ ଯେ ଗଜପତିଙ୍କ ଓଡ଼ିଶା ବର୍ତ୍ତମାନ ହୀନ, ଦୀନ, ଘୃଣିତ ଲାଞ୍ଛିତ ଓଡ଼ିଶାରେ ପରିଣତ ହୋଇଅଛି । ଓଡ଼ିଶାରେ ବର୍ତ୍ତମାନ ବଳ ନାହିଁ, ଧନ ନାହିଁ, ମାନ ନାହିଁ, ଜ୍ଞାନ ନାହିଁ, ମନ ନାହିଁ, ପ୍ରାଣ ପର୍ଯ୍ୟନ୍ତ ବି ନାହିଁ । ଓଡ଼ିଶା ଆଜି ନିର୍ଜୀବ ନିଃସନ୍ତାନ କହିଲେ ଚଳେ । ଯେଉଁ ଓଡ଼ିଆ ବୋଲି କହି ତୁମ୍ଭର ପୂର୍ବପୁରୁଷମାନେ ଅନ୍ୟାନ୍ୟ ଜାତିକୁ ପଦଦଳିତ କରୁଥିଲେ, ଯେଉଁ ଓଡ଼ିଆ ବୋଲି କହିବା ମାତ୍ରେ ସେମାନଙ୍କ ହୃଦୟରେ ତେଜ, ବାହୁରେ ବଳ ଓ ମନରେ ଦାମ୍ଭିକତା ଆସୁଥିଲା, ଗଙ୍ଗାନଦୀଠାରୁ କୁମାରିକା ପର୍ଯ୍ୟନ୍ତ ସମସ୍ତ ଭୂଖଣ୍ଡରେ ଓଡ଼ିଆ ଜୟପତାକା ଉଡ୍‌ଡୀୟମାନ ଥିଲା, ଯେଉଁ ଓଡ଼ିଆର ସାହସିକତା ସମ୍ମୁଖରେ ପ୍ରବଳ ପ୍ରତାପୀ ମୁସଲମାନମାନେ ୩୦୦ ବର୍ଷ ପର୍ଯ୍ୟନ୍ତ ନତମସ୍ତକ ହୋଇଥିଲେ; ସେହି ଓଡ଼ିଆ ବୋଲି ନିଜକୁ ପରିଚୟ ଦେବାକୁ ତୁମ୍ଭମାନଙ୍କ ମଧ୍ୟରୁ କାହାକୁ ଘୃଣା ବୋଧ ହେଉଅଛି; ସେହି ଓଡ଼ିଆ ବୋଲି କହି ତୁମ୍ଭେମାନେ ଆଜି ପରଦ୍ୱାରେ "ମୁଁ ଓଡ଼ିଆ ମୋତେ ଅନୁଗ୍ରହ କର—ଚାକିରିଟାଏ ଦିଅ" ବୋଲି ଚିତ୍କାର କରୁଅଛ; ପରଦ୍ୱାରେ ପଦାହତ, ଘୃଣିତ, ଲାଞ୍ଛିତ, ବିତାଡ଼ିତ ହେବାକୁ କୁଣ୍ଠିତ ହେଉନାହଁ । ତୁମ୍ଭେମାନେ ସେହି ଓଡ଼ିଆମାନଙ୍କର ବଂଶଧର ? ଓଡ଼ିଆ ଜାତି ଆତ୍ମ ପରିତୃପ୍ତି ନିମନ୍ତେ କେବେ ପରଦ୍ୱାରେ ଅନୁଗ୍ରହ ପ୍ରାର୍ଥୀ ହୋଇ ନଥିଲା । ଅନୁଗ୍ରହ ଦେଖାଇବା ନିମନ୍ତେ ଓଡ଼ିଆ ଜାତିର ଇତିହାସ ଚିରକାଳ ପ୍ରସିଦ୍ଧ । ୧୨୦୩ ଖ୍ରୀଷ୍ଟାବ୍ଦରେ ମହମ୍ମଦ ବକ୍ତିଆର ଖିଲଜୀଙ୍କ ଦ୍ୱାରା ସିଂହାସନରୁ ବିତାଡ଼ିତ ହୁଅନ୍ତେ, ବଙ୍ଗଦେଶର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣସେନ ଓଡ଼ିଆଙ୍କ ଅନୁଗ୍ରହ ଭିକ୍ଷା କରି ପୁରୀରେ ନିରାପଦରେ ଶେଷଜୀବନ ଯାପନ କରିଥିଲେ । ଆମ୍ଭେମାନେ ଇତିପୂର୍ବେ (ତୃତୀୟ ଅଧ୍ୟାୟରେ) କହିଅଛୁଁ ଯେ, ୧୪୫୭ ଖ୍ରୀଷ୍ଟାବ୍ଦରେ ବାହାମଣୀ ରାଜ୍ୟର ସୁଲତାନ ହୁମାୟୁନ ଶାହଙ୍କ ଦ୍ୱାରା ବାରମ୍ବାର ପରାସ୍ତ ହୋଇ ତେଲେଙ୍ଗା ହିନ୍ଦୁ ରାଜା ଲିଙ୍ଗୁଲା

ନରସିଂହଦେବଙ୍କ ରାଜତ୍ୱକାଳରେ ଓଡ଼ିଆଙ୍କ ଦ୍ୱାରେ ସାହାଯ୍ୟ ଭିକ୍ଷା କରିଥିଲେ । ପୁନର୍ବାର ରାଜା କପିଳେନ୍ଦ୍ରଦେବଙ୍କ ରାଜତ୍ୱକାଳରେ ୧୪୬୦ ଖ୍ରୀଷ୍ଟାବ୍ଦରେ ହାମ୍ବୁରଙ୍କ ପରିବର୍ତ୍ତିରେ ସ୍ୱୟଂ ରାଜା ହେବା ନିମନ୍ତେ ମଙ୍ଗଳରାୟ ଏହି ବାରବାଟୀ ଦୁର୍ଗର ଆଶ୍ରୟ ଭିକ୍ଷା କରିଥିଲେ । କେବଳ ଏତିକି ନୁହେଁ, ହାମ୍ବୁର ଓଡ଼ିଆଙ୍କ ପ୍ରତ୍ୟାବର୍ତ୍ତିନାନ୍ତର ମାଲବା ସୁଲତାନ ମହମ୍ମଦଶାହଙ୍କ ଆଶ୍ରୟରେ ରାଜସିଂହାସନ ଅଧିକାର କଲା ପରେ, ପୁନର୍ବାର ଯେତେବେଳେ ମୁସଲମାନ ଦୌରାତ୍ମ୍ୟରୁ ଆପଣାକୁ ଉଦ୍ଧାର କରିବାକୁ ହାମ୍ବୁର ପ୍ରୟାସ କଲେ ସେତେବେଳେ କେତେ ଉପହାର ଦେଇ (୧) ସାହାଯ୍ୟ ଭିକ୍ଷା କରିଥିଲେ, ସେତେବେଳେ ଉତ୍କଳର ପୂର୍ବପୁରୁଷମାନେ କାପର ଭିକ୍ଷା ଦାନ କରି ଆଶ୍ରିତକୁ ରକ୍ଷା କରିଥିଲେ । (୨) । କେବଳ ଦାକ୍ଷିଣାତ୍ୟ ନୁହେଁ, ଉତ୍ତରାଞ୍ଚଳରେ ମଧ୍ୟ ଓଡ଼ିଆମାନେ ଭିକ୍ଷାଦାନ ପାଇଁ ପ୍ରସିଦ୍ଧ ଥିଲେ । ଯେତେବେଳେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ (୧୫୫୧—୧୫୫୯) ସୁରେମାନଙ୍କ କର୍ତ୍ତୃକ ପରାଭୂତ ଓ ଦୂରୀକୃତ ବଙ୍ଗର ସୁଲତାନ ଇବ୍ରାହିମ ଜୀବନ ରକ୍ଷା ନିମନ୍ତେ ଇତସ୍ତତଃ ହୋଇ ପରିଶେଷରେ ଓଡ଼ିଆଙ୍କ ଦ୍ୱାରେ ଭିକ୍ଷାର୍ଥୀ ହୋଇ ଦଣ୍ଡାୟମାନ ହୋଇଥିଲେ, ସେତେବେଳେ ସ୍ୱଦେଶ ତଥା ସ୍ୱଜାତିର ଗୌରବ ରକ୍ଷା କରି ଓଡ଼ିଆମାନେ ସ୍ୱୀୟ ସହଜାତ ବଦାନ୍ୟ ଗୁଣରେ ଭିକ୍ଷାର୍ଥୀକୁ

(୧) ହାମ୍ବୁର ନିମ୍ନଲିଖିତ ଭାବରେ ଓଡ଼ିଶା ରାଜାଙ୍କୁ ସାହାଯ୍ୟ ମାଗିଥିଲେ "If he (Himber) wished to recover his hereditary dominions in Telingana, now was the Crisis, as Deccan had been ruined by two years of famine, and the armies were reduced to a small body, that he would join him on consideration of being admitted to share in the conquests of the Mussalmans and for the present give him up the fort of Cundpul "with the defendent country"—Ferishta "History of Deccan",

(J. Scott) Vol. I pp 162 3.

(୨) ହମ୍ବୁରଙ୍କ ସାହାଯ୍ୟ ନିମନ୍ତେ ଓଡ଼ିଶା ରାଜା ୧୦୦୦୦ ଅଶ୍ୱାରୋହୀ ଓ ୮୦୦୦ ପଦାତିକ ସୈନ୍ୟ ପ୍ରେରଣ କରିଥିଲେ ।

—Ferishta's "History of Deccan" Jonathan Scott's translation Vol. I p 163.

ଯଥୋପଯୁକ୍ତ ଭିକ୍ଷାଦାନ କରିଥିଲେ (୧) । କେବଳ ଯେ ହୁମ୍ନତ ଓ ସୁ‌ଙ୍ଗ୍ରୀ ବଙ୍ଗଦେଶ ଓ ଦାକ୍ଷିଣାତ୍ୟ ଓଡ଼ିଆଙ୍କ ଦ୍ୱାରେ ଭିକ୍ଷାର୍ଥୀ ହୋଇଥିଲେ ତାହା ନୁହେଁ; ଦିଲ୍ଲୀର ପ୍ରବଳ ପ୍ରତାପ ବାଦଶାହ ମଧ୍ୟ ଦିନେ ଓଡ଼ିଆଙ୍କ ଦ୍ୱାରେ ସାହାଯ୍ୟ ପ୍ରାର୍ଥନା କରିଥିଲେ । ଦୁର୍ଦ୍ଦାନ୍ତ ବଙ୍ଗ ନବାବ ସୁଲେମାନଙ୍କ ଦମନାର୍ଥେ ଅଜସ୍ର ବହୁ ଅର୍ଥ ଓ ସାମର୍ଥ୍ୟ ବ୍ୟୟ କରି ଅକୃତକାର୍ଯ୍ୟ ହୋଇ ଯେତେବେଳେ ମୋଗଲ ସମ୍ରାଟ ଆକବର ଓଡ଼ିଆଙ୍କ ସମ୍ମୁଖରେ ଭିକ୍ଷା ପ୍ରାର୍ଥନା କରିଥିଲେ, ସେତେବେଳେ ଓଡ଼ିଆଙ୍କ ବଦାନ୍ୟତା ସ୍ରୋତ ଆହୁରି ଉତ୍କୂଳ ଭାବରେ ପୁନର୍ବାର ପ୍ରକ୍ଷିପ୍ତ ହୋଇଥିଲା; ସେତେବେଳେ ଓଡ଼ିଆମାନେ ପୁନର୍ବାର ଭିକ୍ଷାର୍ଥୀର ସାହାଯ୍ୟ ନିମନ୍ତେ ବଙ୍ଗଭୂମିରେ ସୁଦ୍ଧାର୍ଥ ଉପସ୍ଥିତ ହୋଇଥିଲେ ।

ଏହିରୂପ ଓଡ଼ିଆ ଜାତିର ଚରିତ ଅନୁଗ୍ରହ ଦେଖାଇବା ନିମନ୍ତେ ଚିର ପ୍ରସିଦ୍ଧ । ପର ଦ୍ୱାରେ ଉଦର ପୂର୍ତ୍ତି ତେଣିକି ଥାଉ, କୌଣସି ଜାତିର କାର୍ଯ୍ୟରେ ପୂଜା ଦିନେ ମାତ୍ର ଭିକ୍ଷାର୍ଥୀ ହେବା ଓଡ଼ିଆମାନେ ସ୍ୱପ୍ନରେ ପୂଜା ଦେଖି ନ ଥିଲେ । ତୁମ୍ଭେମାନେ ସେହି ଓଡ଼ିଆଙ୍କର ବଂଶଧର । ତୁମ୍ଭେମାନେ କପରି ପର ଦ୍ୱାରେ 'ଦେହି ଦେହି' ହୋଇ ଦଣ୍ଡାୟମାନ ହେଉଅଛ ? ତୁମ୍ଭେମାନେ କପରି ଏହି ବୀର କ୍ଷେତ୍ର, ଓଡ଼ିଆ ଜାତିର ଜୀବନର ପବିତ୍ର ପୀଠସ୍ଥଳୀ ବାରବାଟୀକୁ ସମ୍ମୁଖରେ ଦର୍ଶନ କରି ଅନାହାରି ପଦ ଲଳସାରେ, ପର ନିକଟରେ ଭିକ୍ଷାର୍ଥୀ ହୋଇ ଚିତ୍କାର କରୁଅଛ ? ଯେ ଦିନ ସ୍ୱଚକ୍ଷୁରେ ଦେଖିଲ ଉପାଧି କପରି ନିବିଡ଼ ତମସାଚ୍ଛନ୍ନ ପାହାଡ଼ ଜଙ୍ଗଲ ମଧ୍ୟରେ ଗୁଣର ପରିଚୟ ପାଇ ସ୍ୱତଃ ଧାବିତ ହୋଇଥିଲା । ସେ ମହାତ୍ମା କି କେବେ ପର ଦ୍ୱାରେ ଭିକ୍ଷାର୍ଥୀ ହୋଇ ଦଣ୍ଡାୟମାନ ହୋଇଥିଲେ ? ସେ ଥିଲେ ଓଡ଼ିଆ, ତୁମ୍ଭେମାନେ କପରି ସେହି ଓଡ଼ିଆ ହୋଇ ପବିତ୍ର ଉତ୍କଳ ଭୂମିକି କଳଙ୍କ ଦେଉଅଛ ? ମହାରାଷ୍ଟ୍ର ଜୀବନ-ପ୍ରଦୀପ-ଦେବ ମହାତ୍ମା ଶିବାଜୀ ଯେଉଁ ଭୂମିରେ ପଦାର୍ପଣ କରି କହିଥିଲେ—"ଏ ଉତ୍କଳ ଦେବତାମାନଙ୍କର ସ୍ଥାନ, ମାନବର ଏ ଭୂମି କଳଙ୍କିତ କରିବାର ନୁହେଁ"; ହେଇ ପବିତ୍ର ଭୂମିକୁ ତୁମ୍ଭପରି ନିର୍ଜୀବ ଜୀବମାନେ କପରି କଳଙ୍କିତ କରୁଅଛନ୍ତି ? ଯଦି ପର ଦ୍ୱାରେ ଅନୁଗ୍ରହ ଭିକ୍ଷା କରିବାକୁ ଇଚ୍ଛା କର ତେବେ କହ, "ମୁଁ ଓଡ଼ିଆ ନୁହେଁ, ଓଡ଼ିଆ ହୋଇଥିଲେ ମୁଁ ତୁମ୍ଭ ନିକଟରେ ଭିକ୍ଷା କରି ନ ଥାନ୍ତି; ଓଡ଼ିଆମାନେ ଚିରକାଳ ପର ପ୍ରତି ବହୁ ଅନୁଗ୍ରହ ଦେଖାଇ ଅଛନ୍ତି, କେବେ କାହା ପାଖରେ ଅନୁଗ୍ରହ ଭିକ୍ଷା

(୧) "Found shelter at the Orissa Court, and received an estate from the royal demesne"—Hunter Vol. II. "Orissa."

କରିବା ପାଇଁ ବ୍ରତ ପ୍ରସାରଣ କର ନାହାନ୍ତି'' । ଓଡ଼ିଆ ବଡ଼ ପବିତ୍ର ନାମ, ଓଡ଼ିଆମାନେ ଦେବପ୍ରତିମ ଥିଲେ, ଓଡ଼ିଶା ଦେବଯୋଗ୍ୟ ସ୍ଥାନ ଥିଲା; ଓଡ଼ିଆମାନେ ପର ଦ୍ୱାରେ ନତମସ୍ତକ ହେବାକୁ ଶ୍ୱାନବୃତ୍ତି ବୋଲି ଘୃଣା କରୁଥିଲେ । ଆହା ! ସେ ସ୍ୱାଧୀନ ଚିନ୍ତା କାହିଁ, ଓଡ଼ିଆଙ୍କର ସେ ସ୍ୱାବଲମ୍ବୀଙ୍କ ବୀରତ୍ୱ କାହିଁ, ଓଡ଼ିଆଙ୍କ ସେ ସ୍ଥାପତ୍ୟ-କୌଶଳ, ସେ ଶିଳ୍ପନୈପୁଣ୍ୟ କାହିଁ; ଉତ୍କଳର ବୀରତ୍ୱର ପୀଠସ୍ଥଳୀ ସେ ପବିତ୍ର ବାରବାଟୀ, ସେ ଦୁର୍ଗାରଣ୍ୟ, ସେ ବୀରକ୍ଷେତ୍ର କାହିଁ ? ଆହା ! ''କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !'' ଭାଇ ! ମନରେ ଯଦି ଓଡ଼ିଆ ବୋଲି ଗର୍ବ ଅଛି, ବାହୁରେ ଯଦି ଓଡ଼ିଆର ବଳ ଅଛି, ତେବେ ସେ ମନଦ୍ୱାରା ଚାଳିତ ହୋଇ ପରଦ୍ୱାରେ ଭିକ୍ଷା ନିମନ୍ତେ ସେ ବାହୁ ପ୍ରସାର କର ନାହିଁ । ଅବେ ଏ ବୀରକ୍ଷେତ୍ର ପୁଣ୍ୟଧାମ ବାରବାଟୀ ନିରୀକ୍ଷଣ କର, ଏହି ବାରବାଟୀର ପୂର୍ବ ସ୍ମୃତି ସ୍ମରି ଏହା ନିକଟରେ ନୀରବରେ ଅଶ୍ରୁମୋଚନ କର, ପୁଣ୍ୟଶ୍ଳୋକ ଗଜପତି ଓ ତୁମ୍ଭମାନଙ୍କର ଦେବପ୍ରତିମ ପୂର୍ବପୁରୁଷମାନଙ୍କର ଅମୂଲ୍ୟ, ଅପୂର୍ବ ଉଦାହରଣ ଦ୍ୱାରା ଆପଣାକୁ ସଞ୍ଜୀବିତ କର, ଏହି ବାରବାଟୀ ସମ୍ମୁଖରେ ଦଣ୍ଡାୟମାନ ହୋଇ ନୀରବରେ ଆତ୍ମନିର୍ଭରଶୀଳ ହୋଇ ନିଷ୍କାମ କର୍ମ ସାଧନରେ ପ୍ରତିଜ୍ଞା କର; ତାହା ହେଲେ ତୁମ୍ଭେ ପବିତ୍ର ହେବ, ମନ ନିର୍ମଳ ହେବ, ହୃଦୟ ବଜ୍ରସମ କଠିନ ହେବ, ତୁମ୍ଭ ହୃଦୟରେ ପୂର୍ବ ଓଡ଼ିଆଙ୍କ ଅମିତ ତେଜ ଓ ଧାର୍ମିକତା ପୁନର୍ବାର ଜାଗରୂକ ହେବ । ତୁମ୍ଭେ ଆଉ ଏହି ସଂସାର ରଙ୍ଗମଞ୍ଚରେ ହୀନ ଉତ୍କଳୀୟ ହୋଇ ରହିବ ନାହିଁ । ପୂର୍ବ ଯଶ ଅଚିରେ ଫେରି ପାଇବ । ତୁମ୍ଭେ ଧନ୍ୟ ହେବ, ଜାତି ଧନ୍ୟ ହେବ, ଦେଶ ଧନ୍ୟ ହେବ । ଈଶ୍ୱର ତୁମର ଉଦ୍ୟମରେ ଅମୃତ ବର୍ଷଣ କରିବେ ।

ସ ମା ପ୍ତ ।

— ※ —

ମୁଦ୍ରାକର—ଶ୍ରୀ ଅମ୍ଳାନବଦନ ପଟ୍ଟନାୟକ, ନବଜୀବନ ପ୍ରିଣ୍ଟର୍ସ
ଝାଞ୍ଜିରିମଙ୍ଗଳା, କଟକ-୯

